**Poetry-1985**

**କବିତା-୧୯୮୫**

ପ୍ରଣେତା : **ସଚ୍ଚିଦାନନ୍ଦ ରାଉତରାୟ**

*Author* : **Satchidananda Raut-Roy**



ପ୍ରକାଶକ : **ଦିଗନ୍ତ ପ୍ରକାଶିନୀ**
ମିସନ୍ ରୋଡ୍, କଟକ-୭୫୩୦୦୧

*Publisher* : **Diganta Prakashini**
Mission Road, Cuttack-753001

ମୁଦ୍ରକ : **ଓଡ଼ିଶା ପ୍ରିଣ୍ଟିଂ ୱାର୍କସ**
ମିସନ୍ ରୋଡ୍, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ଅକ୍ଟୋବର, ୧୯୮୫

ପ୍ରଚ୍ଛଦ ଶିଳ୍ପୀ **ଶ୍ରୀ ବିନୋଦ ରାଉତରାୟ**

ମୂଲ୍ୟ ଟ ୧୬-୦୦

*Price* : Rs. 16-00

# ପ୍ରାକ୍‌କଥନୀ

'କବିତା—୧୯୮୩' ଦୁଇ ବର୍ଷ ତଳେ ପ୍ରକାଶ ପାଇଥିଲା । ଗତ ଦୁଇ ବର୍ଷ ମଧ୍ୟରେ ଲିଖିତ ମୋର ୩୫ଟି ନୂଆ କବିତା ଏବଂ ୧୯୮୦ ମସିହାରେ ରଚିତ ୫୩ଟି ଗୀତିକା 'କବିତା-୧୯୮୫' ସଂକଳନରେ ପ୍ରକାଶ କରାଯାଉଛି । ଏଗୁଡ଼ିକ ରସଜ୍ଞ ପାଠକ ମଣ୍ଡଳରେ କେତେଦୂର ଆଦୃତ ହେବ ତାହା ମୁଁ ଜାଣେ ନାହିଁ । କିଂତୁ ମୁଁ ଏତିକି ଜାଣେ ଯେ ସମାଜର ଆଉ ଦଶ ଜଣଂକ ପରି କବିର ମଧ୍ୟ ଏକ ନିର୍ଦ୍ଦିଷ୍ଟ ଭୂମିକା ଅଛି ଏବଂ ସେ ତାହା ନିଷ୍ଠାର ସହିତ ଶେଷ ଅବଧି ପାଳନ କରିବା ଉଚିତ ।

ଏଠାରେ କହିଲେ ଅପ୍ରାସଂଗିକ ହେବ ନାହିଁ ଯେ ମୋର ଦୁଇ ଚକ୍ଷୁରେ ଗ୍ଲୁକୋମା ଓ କ୍ୟାଟାରାକ୍ଟ ହୋଇଥିବା ଯୋଗୁଁ ମୁଁ ଭଲ ଦେଖି ପାରୁ ନାହିଁ । ଚଳିତ ବର୍ଷ ଏପ୍ରିଲ ମାସରୁ ଅଗଷ୍ଟ ମାସ ପର୍ଯ୍ୟଂତ ପ୍ରାୟ ଚାରିମାସ କାଳ ମୁଁ ସପରିବାର ଲଂଡନରେ ଥିବା ବେଳେ ସେଠାରେ କେତେକ ବିଶିଷ୍ଟ ଚକ୍ଷୁ ବିଶେଷଜ୍ଞଙ୍କଂକ ଚିକିତ୍ସାରେ ଥିଲି । ମାତ୍ର ଆଖିରେ କ୍ୟାଟାରାକ୍ଟ ମେଚ୍ୟୁଅର ହୋଇ ନ ଥିବା ଯୋଗୁଁ ଏ ବର୍ଷ ଅପରେସନ ହୋଇ ପାରିଲା ନାହିଁ । ତେଣୁ ମୋର ଅସୁବିଧା କ୍ରମେ ବଢ଼ି ଚାଲିଛି । ଅପରେସନ ନ ହେବା ଯାଏଁ ଏହିପରି ଚାଲିଥିବ । ଏହିସବୁ କାରଣରୁ ମୋର ଲେଖା ସମସ୍ତ କବିତା, ଗଳ୍ପ ପ୍ରବଂଧ ଆଦି ଶୀଘ୍ର ଶୀଘ୍ର ପ୍ରକାଶ କରିଦେବା ସମୀଚୀନ ମନେ କଲି । ତା'ଛଡ଼ା ମୋର ସମସ୍ତ ବହି ନାନା କାରଣରୁ ଗତ ୧୯୮୩ ମସିହାରୁ 'ଦିଗଂତ ପ୍ରକାଶିନୀ' ହିଁ ପ୍ରକାଶ କରୁଛି । ତେଣୁ ନିଜେ ଲେଖି ସେ ବହି ପ୍ରକାଶ କରିବା ଓ ତହିଁର ବିକ୍ରିର ବ୍ୟବସ୍ଥା କରିବା ସମସ୍ତ କାର୍ଯ୍ୟ ଏକକ ଉଦ୍ୟମରେ ହିଁ କରିବାକୁ ପଡ଼ୁଛି । କାହିଁକି ନିଜ ବହି ନିଜେ ପ୍ରକାଶ କରିବାକୁ ବାଧ୍ୟ ହେଲି ତାର ଇତିହାସ ସୁବିସ୍ତୃତ । ତାହା ଏଠାରେ ଆଲୋଚନା ନ କରିବା ହିଁ ଭଲ ।

ଏ ପୁସ୍ତକରେ ସଂକଳିତ କବିତାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ସେଥି ମଧ୍ୟରେ ଝଂକାର, ଆସଂତା କାଲି, ସମାବେଶ, ପ୍ରତିବେଶୀ, ପାଂଚଜନ୍ୟ, ସୁଚରିତା, ଅମୃତାୟନ, ପ୍ରଜାତଂତ୍ର, ସହକାର, ଜୀବନ ରଂଗ ପ୍ରଭୃତି ବିଶେଷ ଉଲ୍ଲେଖ-ଯୋଗ୍ୟ । ବସ୍ତୁତ ପତ୍ରିକା ସଂପାଦକ ଓ ସଂପାଦିକାମାନେ ବିଭିନ୍ନ ସମୟରେ ଲେଖା

ପାଇଁ ଯୁପ ଦେଇ ନ ଥିଲେ ଏତେଗୁଡ଼ିଏ କବିତା ଏହି ସମସ୍ତ ଭିତରେ ହୁଏତ ଲେଖାଯାଇ ପାରି ନ ଥାଂତା । ସେମାନେ ମୋର ଅଶେଷ ଧନ୍ୟବାଦ ଓ କୃତଜ୍ଞତା ଗ୍ରହଣ କରିବେ । ଏ ପୁସ୍ତକର ପ୍ରଚ୍ଛଦପଟ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟଂକୁ ମୁଁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି ।

ଶେଷରେ ମୋର ଆଶା ଏ ବହିଟି ସୁଧୀ ମହଲରେ ଗୃହୀତ ହେବ ।

ମିସନ୍ ରୋଡ୍,
କଟକ-୭୫୩୦୦୧

**ସଚ୍ଚିଦାନଂଦ ରାଉତରାୟ**
ତା ୨୦।୧୦।୧୯୮୫

## ଗ୍ରଂଥ ପଂଜି

ସାମୁଏଲ ବେକେଟଂକ ନାଟକ 'ଓ୍ୱେଟିଂଗ୍ ଫର ଗଡୋଟ୍', ନ୍ୟାସବୀଂକର ଏକ କ୍ଷୁଦ୍ରଗଳ୍ପ, ଟଡ୍‌ଂକ ରାଜସ୍ଥାନ ଇତିହାସ, ଓଡ଼ିଶା ଇତିହାସ, ପଂଡିତ ଗୋଦାବରୀଶ ମିଶ୍ରଂକ 'ଆଖ୍ୟାୟିକା', 'ପରିଚୟ', କଲିକତା, ୧୯୭୩, 'କାଳି ଓ କଲମ', କଲିକତା, ୧୮୭୨-୭୩, 'ପୋଏଟ୍ରି', ଲଂଡନ, ୧୯୮୨, 'ପୋଏଟ୍ରି', ନ୍ୟୁୟର୍କ ପ୍ରଭୃତି । ମୁଁ ଏ ଲେଖକମାନଂକଠାରେ ଋଣୀ ।

—**ଲେଖକ**

# ॥ ସୂଚୀ ॥

| ଶୀର୍ଷକ | ପୃଷ୍ଠାଙ୍କ |
|---|---|

## ଦ୍ୱିତୀୟ ଭାଗ



●

# ଅଜଣା

ସବୁ ଜଣା ପାଲଟେ ଅଜଣା ।
ଯାହା ଥିଲା ଯାହା ଅଛି ଦୁହେଁ ଭିନ୍ନ,
ପଡ଼େ ନାହିଁ ଜଣା ।
ନିଜେ ବି ତ ନିଜକୁ ମୁଁ ପାରେ ନାହିଁ ଚିହ୍ନି
ହୁଏ ବାଟବଣା।
ଯାଇଥିଲେଁ ଯେଉଁବାଟେ
ମେଘର ମେଦୁର ଛାୟା ତଳେ
ଯାଇଛି ବଦଳି ।

ଯେଉଁ ହୋଟେଲରେ ଥିଲେଁ
ତାହା ଆଜି ନାମହୀନ,
ଏ ରାସ୍ତାର ମାନଚିତ୍ର ସ୍ମୃତିରେ ମିଳେନା ।
ମୋ'ର ପରିଚୟ ମୋ'ଠାରେ ବି ହେଉଛି ବିବର୍ଣ୍ଣ
ଦିନୁଦିନ ।।

ସକାଳେ ମୁଁ କଲାବେଳେ ସୂର୍ଯ୍ୟ ନମସ୍କାର
ଭାବେ ସବୁ ଠିକ୍ ଅଛି ଯଦିଓ ବଦଳିଛି ବହୁ
ନିର୍ଦ୍ଦିଷ୍ଟ ସମୟ ।
ଠିକ୍ ଅଛି ମନେହୁଏ ପୃଥିବୀର ପୃଷ୍ଠା
ଯଦିଓ ତା ନାହିଁ ଥିଲା ଯେଉଁପରି, ମୁହୂର୍ତ୍ତ ଆଗରୁ ।
କିଛି ହିଁ ତ ଦେଖେ ନାହିଁ ଯା ପ୍ରାଚୀନ, ଜଡ଼
ପଡ଼ିରହେ ଚିରସ୍ଥାଣୁ ଯେଉଁପରି ଦୁଂଦୁଭିର ହାଡ଼ ।
ବଦଳେ ମୁଁ । ବଦଳେ ଜୀବନ ।।

ବ୍ରହ୍ମାଂଡ ଭୂଗୋଳେ
ମୁଁ ଖୋଜୁଛି ମୋର ବୀଜଫଳ
ସ୍ମୃତିହୀନ ସମୟରେ, ସେ କେଉଁ ପ୍ରାକ୍-କାଳେ
ଖୋଜୁଛି ମୁଁ ଆପଣା ଅର୍ଥରେ ।।

□ □ □

କଟକ-୧
ତା ୨୮।୧।୧୯୮୫

# ଅଭ୍ୟଂତର

ଘର ମଧ୍ୟେ ଘର, ଘର ତା' ଭିତରେ ।
ଗଂଭିର ଭିତରେ ପୁଣି ଆରେକ ଗଂଭିର,
ବହୁ ଅଭ୍ୟଂତର,
ତା' ଭିତରେ ମୁଁ ଆଉ ମୋର ନିର୍ଜନତା ।
ମୋତେ ଘେର ଛଡ଼ା ଏକ ଉନ୍ମୂଳ ଶୂନ୍ୟତା ।
ବାହାରଟା ମହାଶୂନ୍ୟ, ଭିତରଟା ଖାଁ ଖାଁ ।
ଏ ଜଗତ୍ ସତ୍ୟ ନା ମାୟା
ସର୍ପ-ରଜ୍ଜୁ ପରି, ଆପେକ୍ଷିକ
                                        ନା ନିର୍ବିଶେଷ !

ତା' ଭିତରେ ମୁଁ କି ଏକ ନିର୍ଜନ ମୁହୂର୍ତ୍ତ
ସ୍ୱୟଂସିଦ୍ଧ, ନା ଏକ ଭଗ୍ନାଂଶ ଅସ୍ତିତା
                              ଅର୍ଥହୀନ......ଫାଂକା ? ?

ମୋ' ଭିତରେ ମୁଁ ଖଂଡ ଖଂଡ
କେଉଁଠି ପାଇବି ଖୋଜି ନିଜସ୍ୱ ବ୍ରହ୍ମାଂଡ
                              ସମସ୍ତର ଅତିରିକ୍ତ ସ୍ଥାନ !
(ଯେଉଁଠାରେ ସମସ୍ତ ସଂପୂର୍ଣ୍ଣ, ସଂପୂର୍ଣ୍ଣ ସ୍ୱାଧୀନ ।
ପୂର୍ଣ୍ଣରୁ କାଢ଼ିନେଲେ ପୂର୍ଣ୍ଣ    ଅବଶିଷ୍ଟ ରହେ ଯହିଁ ପୂର୍ଣ୍ଣ । )
ବାହାରେ ତା ନାହିଁ, ଭିତରେ ବି ନାହିଁ,
ତାହା ଏକ ନିମାନ୍ୱୟ ଘାତ-ପ୍ରତିଘାତ
ବାହାରର ଭିତର ସଂଗରେ,
ଦିଆ-ନିଆ ବସ୍ତୁ ଓ ଭାବର ।
ମୁଁ ତାକୁ ପାଇବି କେଉଁପରି
ବିଚ୍ଛିନ୍ନ ସ୍ଥିତିରେ, ମୋର ଶୂନ୍ୟ-ସଂହିତା ପୃଷ୍ଠାରେ ?
କେତେ ଗଢ଼େ କେତେ ଭାଂଗେ
                                        ନିଜକୁ ଓ ଜଗତ୍‌କୁ
ଖଂଡ ଖଂଡ ହୋଇଯାଏ ସବୁ ବାସ୍ତବତା ।
ତଥାପି ମୁଁ ମୋର ନିର୍ଜନତା ।
ନିଜର ମାନ୍ୟତା ॥

□□□

କଟକ-୧
ତା ୧୫।୨।୮୫

# ଦୃଶ୍ୟାଂତର

ମୁଁ ସବୁ ଜାଣେ ମୁଁ କିଛୁ ଜାଣେନା
ମୁଁ ସବୁ ଦେଖେ ମୁଁ କିଛୁ ଦେଖେନା ।
ବହୁ ଦୃଶ୍ୟ ବର୍ଣ୍ଣ ରହିଯାଏ ଚକ୍ଷୁର ଉତାଳେ
ଦୃଶ୍ୟାଂତର ଆଗୁ ।
ରହିଯାଏ ବହୁ ବସ୍ତୁ ପରିଚୟହୀନ
ଆଖି ତାର ସାକ୍ଷୀ ହେବା ଆଗୁ ।।

ମୁଁ ସବୁ ଜାଣେ ମୁଁ କିଛୁ ଜାଣେନା ।
ମୁଁ ସବୁ ଦେଖେ ମୁଁ କିଛୁ ଦେଖେନା ।
ସାମ୍ନାରେ ଦୁଇଟି ଦରଜା ।
ଏକ ଦିଗେ ମପାଚୁପା ସେତୁ,
ଅନ୍ୟ ଆଡ଼େ ଶୂନ୍ୟର ବଳୟ,
ନିରପେକ୍ଷ ଦ୍ୱାର ଦେଇ
ଯାତ୍ରା ମୋ'ର କେଉଁ ଦୃଶ୍ୟାଂତରେ ।। □ □ □

କଟକ-୧
ତା ୧୪।୩।୮୫



# ପାପର ବେତନ ମୃତ୍ୟୁ

'କାରଣ ପାପର ବେତନ ମୃତ୍ୟୁ' ।
ମୋ' ଆଦମ ପାପ ଚାଲେ ଆଗେ ଆଗେ ମୋର,
ପଛେ ଧର୍ମ-ଶ୍ୱାନ ।
ପାପ ଆଉ ପୁଣ୍ୟର ଊର୍ଦ୍ଧ୍ୱରେ
ମୁଁ ଯେପରି ପଦ୍ମପତ୍ର ଜଳ ।
ପାପ ପୁଣ୍ୟ କିଛୁ ମୋତେ ପାରେ ନାହିଁ ଛୁଇଁ ।
କାରଣ, କାଳଚକ୍ରବାଳେ
ପାପ ପୁଣ୍ୟ ନିୟତ ବଦଳେ ।
ଆଜି ଯାହା ପାପ କାଲି ତାହା ପୁଣ୍ୟ ନାମ ଧରେ ।।

ମୁଁ ଚାଲୁଛି ଅଂଧାରୁ ଆଲୋକେ
ଜଡତାରୁ ଗତିର ପଥରେ ।
ମୁଁ ଚାଲୁଛି ଜନ୍ମ ଜନ୍ମ ନୂତନ ଅଦୃଷ୍ଟେ ।
ଯାହା ସ୍ଥାଣୁ ତାହା ପାପ,
ପ୍ରଗତି ହିଁ ଧର୍ମ ଜୀବନର ।
ମୂଲ୍ୟମାନ ସତତ ବଦଳେ ।
ମଣିଷ ହିଁ ସୃଷ୍ଟିକରେ ତାହା
ବଂଚିବାର ପାଇଁ ।
ଭାଂଗିଦିଏ ଦିଏ ଯେବେ ତାହା ପାଲଟେ ବଂଧନ ।
ମଣିଷ ଜନମି ନାହିଁ ପାଳିବାକୁ ଅମୁକ ନିୟମ ।
ନୁହେଁ ସିଏ ଆଦର୍ଶର ଦାସ ।
ସେଇ ତାର ପରିଚୟ, ସେଇ ତାର ସବୁ ଇତିହାସ ।। □ □ □

କଟକ-୧
ତା ୧୫।୨।୭୫

* ବାଇବେଲ ଦ୍ରଷ୍ଟବ୍ୟ

# ଅଗ୍ନ୍ୟୁତ୍ସବ

ବୈଶାଖର ଖରାର ସ୍ତୂପରେ
ମୁଁ ଶୋଇଛି ।
ମୁଁ ଜଳୁଛି ସହସ୍ର ଶିଖାରେ
ଧୂ ଧୂ ହୋଇ ।
କେଉଁ ଅରୁଣିଠୁ * ଅଗ୍ନି ନେଇ
ଆସିଥିଲ ପୃଥିବୀକୁ ।
ଜଳିଥିଲ ମୋ ଦେହର ଇଂଧନ କ୍ଷୁଧାରେ ।
ନିଜକୁ ମୁଁ କରିବାକୁ ଭସ୍ମୀଭୂତ
ଖୁଜୁ ନାହିଁ ।
ଜାଳୁଛି ମୁଁ ପ୍ରତିଟି ପଦାର୍ଥ
ଯେଉଁଥିରେ ମୁଁ ବଞ୍ଚୁରିତ
କ୍ଷିତି ଅପ୍ ତେଜ,
ବ୍ୟୋମ ଓ ମରୁତ୍ ।
ମୋର ଭୁକ୍ତ ଅବଶେଷ
ପଡ଼ିରହେ ପାଉଁଶ ଗଦାରେ ।
ତୁମେ ତାକୁ ଖୋଜୁନଥ ।
ଦେଖ ସେହି ସ୍ୱାହାହୀନ ଅଗ୍ନିର ଅକ୍ଷରେ
କେଉଁପରି ମୋର ନାମ ହେଉଛି ଲିଖିତ
ହାଡ଼ର ଅଂଗାରେ ॥ □□□

କଟକ-୧
ତା ୨୧।୧।୮୫

---

* ଅରୁଣି ପୃଥିବୀକୁ ଅଗ୍ନି ଆଣିଥିଲେ ଯେପରି ଗ୍ରୀକ୍ ପୁରାଣରେ ପ୍ରମିଥିସ୍ ।

# ଚନ୍ଦ୍ରକଳ୍ପ

ଚନ୍ଦ୍ରକଳେଷ ଛୁଇଁଯାଏ ତାକୁ ।
ମୋ' ମନର ପ୍ରାଂତକ ପାତାଳେ
ଖେଳୁଥାଏ ଯେବେ ସିଏ ସ୍ଥିର ସମୟରେ ।
ମୁଁ ଦେଖେଁ ଯା ମୁଁ ଦେଖି ନଥିଲି,
ମୁଁ ଶୁଣେ ଯା ଶୁଣି ମୁଁ ନଥିଲି
ଶବ୍ଦହୀନ ଅଦୃଶ୍ୟ ନୂପୁରରେ ।
ଯାହା ଥିଲା ହୁଏ ସିଏ ତା'ଠୁ କିଛି ଭିନ୍ନ,
ଯାହା ହୁଏ ତାହା ନାମହୀନ,
ଦେହହୀନ ବିକଳ୍ପ ରୂପରେ ।
(ସେ ଯେପରି କିଛିଟା ବଦଳେ ପ୍ରତି ରୂପାଂତରେ ।
ନିଃସମୟ ନିଖୋଜ ସ୍ମୃତିରେ ।।

ସେ କି ଖାଲି ସ୍ମୃତିର ନାୟିକା !
କେଉଁ ପୋଡ଼ା ଦେଉଳର ବା ଶାଳଭଂଜିକା !
ଲୁଚିଥିଲି ଏତେଦିନ ଗୂଢ଼ ଅଂଧକାରେ
ମୁଁ ଖୋଜୁଛି କେତେଦିନ ତାକୁ
ଘରେ ଓ ବାହାରେ ?
ଝରକାର ଯମଜ ପରଦା ଟେକି
ଝାଉଁବଣେ ଗୁଂଜନୀ ରାତିରେ ।
କିଂତୁ ସେ ତ କେଉଁଠି ନଥିଲା ।
ଥିଲା ନାହିଁ ମନେ ବା ଅଂଗନେ
ଥିଲି ହୋଇ ଅକସ୍ମାତ୍ ସ୍ମୃତିର ନାୟିକା
ମୋ' ମନର ଅତଳ ପାତାଳେ,
କିଛି ଜଣା କିଛି ଅଜଣାରେ ।। □□□

ମିସନ୍ ରୋଡ଼, କଟକ-୧
ତା ୧୫।୨।୮୫

# ସାମ୍ରାଜ୍ୟ

ସମସ୍ତ ସାମ୍ରାଜ୍ୟ ମୋର ଗୋଟିଏ ବଲ୍ମୀକ,
ସୁପ୍ରଶସ୍ତ ଖଣ୍ଡର ମଂଡପ,
କୁଢ଼ କୁଢ଼ ଗ୍ଲାନି ଆଉ ବିଦ୍ୱେଷର ସ୍ତୂପ
ବକେୟା ରାଜସ୍ୱ ପରି ଭାର ମୋ' କାଂଧରେ ।
ତଥାପି ସେପାଇଁ କେତେ କୁଟିଳ ଚକ୍ରାଂତ,
କେତେ ଚକ୍ରବ୍ୟୂହ

ଅଦୃଶ୍ୟ ଶତ୍ରୁଙ୍କ !
କିପରି ଜାଣିବି ?
କିପରି ଚିହ୍ନିବି କହ ଭ୍ରାତାଙ୍କ ବଦନ
କିଏ ଅବା ଅଛି କେଉଁ ମତେ !
ମୋ' ଅଜାତଶତ୍ରୁ ମନ ହୁଏ ପ୍ରବଂଚିତ
ନିଜେ ହୁଏ ନିଜର ବିପଦ ।
ଶୁଭ୍ର ସ୍ମିତ ଉହ୍ଲାଳରେ
କିପରି କଳିବି ବିଷଦାଂତ
କାଳସର୍ପଂକର
କରିଛଂତି ଯିଏ ସେଇ ବଲ୍ମୀକରେ ଘର ।।

ହୃତରାଜ୍ୟ, ମୃତବସ୍ତ୍ର ମୁଁ ଶେଷ ସମ୍ରାଟ ।
ତଥାପି ମୁଁ ଗୃହଁରହେ, ଦୃଷ୍ଟିହୀନ,
ସେ ସାବିତ୍ରୀ-ପଥ
ମଂଗଳ ଉଷାଟି ପରି ଯେ ଆସେ ଓହ୍ଲାଇ
ଆକାଶ ତୋରଣୁ
ଶୁଚିମତୀ ସୌଭାଗ୍ୟଶାଳିନୀ
ପୁତ୍ରବଧୂ ସମ ।।

□ □ □

ମିସନ୍ ରୋଡ, କଟକ-୧
ତା ୯।୧୨।୮୪

# ଅଶୁଭ ଶବ୍ଦ

ଅଶୁଭ ଶବ୍ଦର ରଡ଼ି
(ଯେଉଁପରି କାଳଭୈରବର)

ଶୁଣାଯାଏ ଗମ୍ଭୀର ନିଦରେ ।
ଅଶୁଭ.କାହ୍ନାଳୀ ଶୁଭେ
ମନ୍ଦିର ପ୍ରାଙ୍ଗଣେ,
ଗମ୍ବୁଜ ମିନାରେ ।
ନିଶ୍ଚେତ ମଣିଷ ଶୁଇଲେ ଗମ୍ଭୀର ନିଦ୍ରାରେ ।
ଶକୁନର ଛାଇ ପଡ଼େ
ଘରେ ଘରେ,
କଫିନ ଟେବୁଲେ ।
ବରଫ ଜଳୁଛି ଦେଖ
ମଧ୍ୟବିତ୍ତ ସାରା ସଂସାରେ ।।

ଯେଉଁଠି ଘୁମନ୍ତ ଶିଶୁ
ସୂର୍ଯ୍ୟୋଦୟ ଦେଖିବା ଆଗରୁ
ବୁଡ଼ିଯାଏ ଖୁନ୍‌ର ସାଗରେ,
ଧର୍ମର ନିଶାଣ ଲାଲ
ମଣିଷ ଲହୁରେ ।
ନିଜସ୍ୱ କଥନ ହୁଏ ଯହିଁ ନାମାବଳୀ,
ବରଫ ପୋଡୁଛି ଦେଖ
ପ୍ରାସାଦେ, କୁଟୀରେ ।।

ଗମ୍ଭୀର ନିଦରେ ଶୁଣେ
ଅଶୁଭର ଡାକ ।
ଖରପ୍ରାପ୍ତ ପୁରୋହିତ
ମୁଖେ ଉଚ୍ଚାରିତ
ଅବୁଝା ମନ୍ତ୍ରର ଧ୍ୱନି
ବଳିଖୁଣ୍ଟେ ବାଳକର କାନେ

□□□

ଗୁଂଜରେ ଯେପରି ।
ଅଶୁଭ ଲକ୍ଷଣ ଦେଖେ
ଗ୍ରାମ ଓ ସହରରେ ।
ବର୍ଷ ଜଳୁଛି ଦେଖ
କଫି ଟେବୁଲରେ ।।

□□□

ମିସନ୍ ରୋଡ଼, କଟକ-୧
ତା ୪।୧୨।୮୪



# ଜୀବନ ସହିତ ସାକ୍ଷାତ୍‌କାର

ଜୀବନକୁ ମୋର ପଚାରିଲି ଦିନେ—
କି ଦେଇଛ କି ପାଇଛ କହ ସାଫ୍ ସାଫ୍ ।
କହିଲା ଜୀବନ—
ଯା ଦେଇଛୁ ନାହିଁ ପଟାଂତର,
ତାହା ଯେ ଅମାପ ।

ନିଜକୁ ନିଃଶେଷ କରି ଦେଇଛୁ ନିଗାଡ଼ି
ଗଣି ନାହିଁ ଲାଭ କ୍ଷତି, ଦେଇଛୁ ସର୍ବସ୍ୱ ।
ଯା ପାଇଛୁ ତାହା ସେଇ ଦେବାର ମାଧ୍ୟମ
ନୁହେଁ କିଛୁ ଭିନ୍ନ ବା ବିଯୁକ୍ତ ।
ବରଂ ଦୁଇଟା ମିଶି ଏକ ଯୋଗଫଳ ।
ସବୁ ଦ୍ୱଂଦ୍ୱ, ସବୁ ବିପରୀତ
ହୋଇଯାଏ ସମନ୍ୱିତ ଏକାଧାରେ ।
ଯେ ଫୁଟାଏ ବସଂତ କୋରକ
ସେହି କାଲି ହୁଏ ପୁଣି ବିପ୍ଳବର ଡାକ,
ପ୍ରଚଂଡ ମାର୍ତ୍ତଂଡ,
ସବୁ ପରିମାଣ
କ୍ଷଣରେ ସେ କରେ ରୂପାଂତର,
ଯେଉଁପରି ଜଳ ହେଲେ ବାଷ୍ପ
ବଦଳେ ତା' ଗୁଣ ।
ଲଭେ ଏକ ନୂଆ ପରିଣାମ,
ନୂତନ ନିଯୁତ ।
ଯାହା ଧ୍ୱଂସ ତାହା ଏକ ନୂତନ ନିର୍ମାଣ
ଯେଉଁପରି ବୀଜର ବିଲୟେ ଅଂକୁର ଉଦ୍‌ଗମ ।।

ପଚାରିଲି, କାହାକୁ ପାଇଚ ଭଲ
କାହାକୁ କରିଚ କ୍ରୋଧାନ୍ୱିତ ?
ଜୀବନ କହିଲା—
ମଣିଷ ହିଁ ସବୁଠାରୁ ସତ୍ୟ
ତା'ଠୁ ବଡ଼ କେହି ନାହିଁ ।

ସେ ସବୁର ମାପ ।
ପାଉଛି ମୁଁ ମଣିଷକୁ ଭଲ ।
ଯିଏ କରେ ମଣିଷକୁ ଶୋଷଣ ଖଂଡିତ
ମୁଁ ତାକୁ ଦେଉଛି ଫିଂଗି ସପ୍ତକୋଶ ଦୂରେ
ମୋ' ଡାହାଣ ପାଦ ବୁଢ଼ା ଆଂଗୁଠିରେ
ଯେଉଁପରି ସପ୍ତଶାଳ ।

ତୂଳା ପରି ଯାଉଛି ସେ ଉଡ଼ି
ସେମାନଂକ ସଂଗେ ପଡ଼ୁଛି ଉପୁଡ଼ି
କଳ୍ପନାର ଉଇଖିଆ ସମସ୍ତ ମାସ୍ତୁଲ ।
ବସ୍ତୁ ଭ୍ରମ, ବସ୍ତୁ ଉପଦେବତାର ଦଳ,...
ଅଖାଡର ସମସ୍ତ ମାସ୍ତୁଲ ।।

ବୁର୍ଜୋୟାଂକୁ ଚିଡ଼ାଉଛି ।
ସେମାନଂକ କୁତ୍ସିତ ମୁହଁକୁ
ଧରି ମୁଁ ଦର୍ପଣ
ଦେଖାଉଛି ଆଗେ ସେମାନଂକୁ ।
ତା'ପରେ ଦୁନିଆ ଯାକକୁ ।। □□□

କଟକ-୧
ତା ୨୮।୧୨।୮୪



# ଏକାଂତେ ବଂଧୁଂକ ମୁଖ

ଏକାଂତେ ବଂଧୁଂକ ମୁଖ
ବିରଳ ନକ୍ଷତ୍ର ପରି
                କରେ ଉଦ୍‌ଭାସିତ
ମୋ ସାୟାହ୍ନ ବେଳ ।
ସେଇ ମୃତ ବଂଧୁଂକର ନାମ
କହିଯାଏଁ ଫୁଲଂକର କାନେ କାନେ,
କାରଣ ଫୁଲମାନେ ହିଁ ନେବେ ପ୍ରତିଶୋଧ
ଆଲୋକିତ ମଂଚେ ବା କବରେ ।।

କୈଶୋରର କଂଚ୍ଚମାଟି
ଯୌବନର ଅଗ୍ନି ଅଶ୍ୱ ଗତି,
ସେତେବେଳେ କିଏ ଥିଲା
                ସେମାନଂକ ଛଡ଼ା ?
ଗ୍ରୁସ୍ଥାସହଚରଗଣ,
ହୃତ୍‌ପିଂଡର ସୌରଧ୍ୱନି ହୋଇ
ମୋ' ସନ୍ନ୍ୟାସ ସ୍ମୃତିରେ ଜୀବିତ ।।

ଅଂଧକାରେ
ସେତୁ ପାରି ହେଲାବେଳେ,
ଫିସ୍ ଫିସ୍ କେତେ ପଦ କଥା,
ହୃଦୟର ସମସ୍ତ ସଂଳାସ
ହାତେ ଧରି ଚାଲିବା ବେଳରେ
ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ
ସେମାନଂକ ଛଡ଼ା କିଏ ଥିଲା··· ?

ଶ୍ରେଷ୍ଠ ପ୍ରେଷ୍ଠ ସଗ୍ୟାଂ ଗୁଡ଼ା
                ନ ଥିଲା ତ ଜଣା,
ଲାଭ କ୍ଷତି; ଭବିଷ୍ୟତ
                କିଛି ହିଁ ନ ଥିଲା ।

କେବଳ କେତୋଟି ବନ୍ଧୁ,
ସାମାନ୍ୟ ପାଥେୟ
ଅଳ୍ପ କିଛି ଟଂକା-ବା ଅଧୁଲି
ବିଦେଶୀ ସମ୍ରାଟ ମୁଂଡ଼ ଅଂକା ।
ସବୁ ପଥ ଥିଲା ବଂକା ଡଂକା ॥

ଜାଣିଥିଲୁଁ ମୃତ୍ୟୁର ଠିକଣା ।
ସମସ୍ତ ପ୍ରକାର ମୃତ୍ୟୁ
ହୋଇଥିଲା ହାତର ଖେଳନା ।
ଖାଲି ପଦେ କଥା ନେବା ପାଇଁ ।
ରକ୍ତ ମାଂସ, ହିଂସା ଘୃଣା ହାନ
ହାଡ଼ର ଶୁଭ୍ରତା
ବଂଚ ରହିଥିଲା ।
ପ୍ରତି ମୃତ୍ୟୁ ଏକ ଶ୍ୱେତପତ୍ର ।
ସେଇ ମୃତ ବଂଧୁମାନଂକୁ ମୁଁ
କରିବି ସନାକ୍ତ ଶେଷଥର ପାଇଁ ।
ସେମାନଂକ ଜମାନବଂଦି
ରଖିଯିବି ଫୁଲଂକର କାନେ ।
କାରଣ ଫୁଲମାନେ ହିଁ ପ୍ରତିଶୋଧ ନେବେ ॥ □□□

ମିସନ୍ ରୋଡ଼,
କଟକ-୧
ତା ୩।୧୨।୮୫



# ମହାସ୍ମୃତି

ହେ ମେଘବାହନ ମୃତ୍ୟୁ !
　　　　ନଷ୍ଟିଙ୍କ ପତାକା ହାତେ ଏ ଦେହକୁ
　　　　କବଳିତ କରିବା ଆଗରୁ
ଦେଖାଅ ମୋ' ପୂର୍ବାପର ।
କର ମୋତେ ମହାସ୍ମୃତି
ବିଗତ ଓ ଆଗାମୀ ଦିନର ।
ଗୋଲାପିଅ ଚନ୍ଦ୍ରପଟ
ମୋ' ପୂର୍ବଜନ୍ମର ।
କ'ଣ ଥିଲି, କ'ଣ ନାହିଁ, କ'ଣ ହେବ,
ଏବଂ କ'ଣ ହୋଇ ପାରିଥାଂତି ।
କେଉଁ ଉପନଦୀ ତୀରେ
　　　　ଅସ୍ପଷ୍ଟ ଦୁର୍ଗରେ
ମୁଁ କି ଥିଲି ବଂଦୀ,
କେଉଁ ଲୁପ୍ତ ସାମ୍ରାଜ୍ୟର ଅଧିପତି ?
ଦେଖାଅ ମୁକୁଟ ମୋର (ଭୂଲୁଂଠିତ)
ଏବଂ ମୋର ସ୍ୱର୍ଣ୍ଣ ଉପବୀତ,
　　　　ବିଦୀର୍ଣ୍ଣ ତୂଣୀର
ବୃଷସ୍କଂଧେ,
ଏବଂ ଶାଳପ୍ରାଂଶୁ ବାହୁ (ଆଲିଂଗନରତ)
　　　　ପ୍ରିୟାର ଗଳାରେ ।
ଦେଖାଅ ମୋ' ତରବାରି
ଗଜଦଂତ କୋଷରେ ଆବଦ୍ଧ;
ଏବଂ ମୋର ଉପପତ୍ନୀଗଣ,
ନର୍ତ୍ତକୀ ଓ ଚଟୁଳ ପାର୍ଷଦ ।
ଏବଂ ଝଲମଲ ସୁରାପାତ୍ର,
　　　　ମଣି ଜଡ଼ିତର ସିଂହାସନ ।
ଭଲ କରି ଚିହ୍ନାଅ ସେ ଭ୍ରାତାଂକ ବଦନ
କୃତଘ୍ନ, ବିଶ୍ୱାସଘାତୀ,
ପଂଚମବାହିନୀ ଘୃଣିତ ଶତ୍ରୁର ।।

ଅବା ଥିଲି ବ୍ରାହ୍ମଣ ବାଳକ
ଗଂଗୋତ୍ରି କୂଳେ, ଶାଳଗ୍ରାମ ସାଉଁଟିବାବେଳେ
କିଂବା ମେଷପାଳକର ଘରେ
ଜନ୍ମିଥିଲି ଶତଦ୍ରୁ କୂଳରେ
ଆର୍ଦ୍ରା ନକ୍ଷତ୍ରରେ ? ?

ଖୋଲିଦିଅ ସମସ୍ତ ଗବାକ୍ଷ
ଭବିଷ୍ୟ କାଳର
କ'ଣ ହେବ, ନାହିଁ,
ଯେ କେଉଁ ନିସର୍ଗ କାଳ,
ପୃଥ୍ୱୀରେ ବିହରି
ମୁଁ ଆସିବି ଫେରି ଏ ଗ୍ରହକୁ
ଶତେକ ଆଲୋକ-ବର୍ଷ ପରେ,
କାଳ ଜୟ କରି !
କହିଦିଅ ଭବିଷ୍ୟ ବାରତା ।
ସୁନାର କୁରାଢ଼ୀ ହାତେ କେଉଁ କାଠୁରିଆ
ଖଂଡ ଖଂଡ କରିବା ଆଗରୁ
ରକ୍ତ ଚଂଦନର ବୃକ୍ଷ,
ଖୋଲିଦିଅ ତିନୋଟି ଗବାକ୍ଷ
ଭୂତ, ବର୍ତ୍ତମାନ, ଭବିଷ୍ୟର ।
କରି ମୋତେ ମହାସ୍ମୃତି ସମଗ୍ରସତ୍ତ୍ୱାର ।
ମୋତେ କର ମହାକାଳ, ମହାକାଶଗ୍ରସ୍ତ ।
ମହାମେଘବାହନ ହେ ମୃତ୍ୟୁ !
ତୁମକୁ ସ୍ୱାଗତ ।
ଯେଣୁ ତୁମେ କର ମୁକ୍ତ କାଳର ବଂଧନୁ,
ନେଇଯାଅ କାଳରୁ କାଳାଂତର ।। *

□ □ □

---

* କବି ଇଏଟ୍‌ସ୍ ମଧ୍ୟ ମହାସ୍ମୃତି ବା *Anima Mundi* ଭଳି କିଛି ଗୋଟାଏ ଧାରଣା ପୋଷଣ କରୁଥିଲେ ଯଦିଚ ତାହା ସଂପୂର୍ଣ୍ଣ ପୃଥକ ଏ କବିତାର ଧାରଣାଠାରୁ / ଲେ ଃ /

ପୃଥ୍ୱୀ = Space

# ନାଟ୍ୟକାର

ଚରିତ୍ରମାନେ ଯୋଡ଼ିଯାଂତି ଏକେ ଏକେ,
ରଂଗମଂଚେ
ମୁଁ ନାଟ୍ୟକାର ଦେଖେ
                    ନିର୍ବିକାରେ
ଈଶ୍ୱରଂକ ପରି ।

ଦୃଶ୍ୟପଟ ଘନଘନ ଯାଉଛି ବଦଳି ।
ଶେଷ ନାଟକର ସର୍ବଶେଷ ଅଂକେ
ନାୟିକା ରଂଗମଂଚ ଛାଡ଼ି
ଆସେ ମୋ' ଆଡ଼େ ।

ଦର୍ଶକଂକ ଭିଡ଼େ
ଅଗଣିତ ଲୋକଂକ ମଧ୍ୟରେ
ମୁଁ ତାକୁ ସ୍ପଷ୍ଟ ଚିହ୍ନିପାରେ ।

ହରାଇଛି ସ୍ୱାମୀ ଓ ପ୍ରେମିକ
ଏକ ସଂଗେ ଦ୍ୱଂଦ୍ୱ ଯୁଦ୍ଧେ ।
କ୍ରନ୍ଦନ ଆଗେ ।
ବିଧ୍ୱସ୍ତ ବାଳିକା ।
ମୁଁ ତାକୁ କିପରି ରଖିବି ଧରି
କେଉଁ ଅଧିକାରେ
କିପରି ମୁଁ କରିବି ଗ୍ରହଣ
ଏ କାଲୁଷ୍ଟ ପ୍ରାଣ
                    (କେଉଁ ଭୂମିକାରେ !)
ଯେ କହିଆସିଛି କଥା ଆଜିଯାଏ
                    ପ୍ରସ୍ତୁତ ଶବ୍ଦରେ,
ମୁଁ କିପରି ଶିଖାଇବି ତାକୁ
                    ନିଜସ୍ୱ ସଂଳାପ
ନିଜର କଥନ,
ଗଚ୍ଛିତ ଶବ୍ଦଂକ ବଦଳରେ ?
ମୁଁ ମଧ୍ୟ ଆଜିଯାଏ ବୁହାଇଛି ଯାହା

ତା ମୁହଁରେ, ତାହା ନୁହେଁ
  ମୋର କଥା ।

ଜୀବନର ଶେଷ ଅଂକେ
ମୋର ଆଜି ପ୍ରଥମ ମିଳନ
  ଆଉ ଏକ ଜୀବନ ସଂଗରେ ।

ଏ ସାକ୍ଷାତ୍‌କାର
ନୁହେଁ ନାଟ୍ୟକାର ଓ
  ଚରିତ୍ର ମଧ୍ୟରେ ।
ଏ ସାକ୍ଷାତ୍ ମଣିଷ ଓ ମଣିଷ ମଧ୍ୟରେ
  ଅଭ୍ୟସ୍ତ ରୁଟିନ୍ ଗ୍ରୁଡ଼
ମୁଁ ଜାଣେନା
କିଏ ଅଟେ କାହାର ସର୍ଜନା ॥

ମୋ' ଆଦମ ପାପ ମାଗେ
  ମୂଲ୍‌କାତ୍
ମୋ' ସଂଗରେ ।
ଖୋଲିଦିଏ ଝର୍କା ଏକ ଏକ ।
  ମୁକ୍ତ ବାୟୁ ଭସି ଆସି ଲାଗେ
  ମୋ' ଦେହରେ, ପାହାଡ଼ ତଳରୁ ।
ମୋର ପୁଣ୍ୟଫଳ ବିକଳ୍ପ ମାର୍ଗରେ
  ଯଦି କିଛି ଥାଏ
ପାଲଟେ ବିରୋଧାଭାସ ।
କାରଣ ମୁଁ ପାପ ଆଉ ପୁଣ୍ୟର ଊର୍ଦ୍ଧ୍ୱରେ ।
(କିଛି ନୁହେଁ ନିର୍ବିଶେଷ, ସବୁ ଆପେକ୍ଷିକ,
  ନିଶ୍ଚିତ ବଦଳେ)

ଏବଂ ମୁଁ ବସିରହେ ଚିତ୍ରାର୍ପିତ ପରି
ଐଶ୍ୱର୍ଯ୍ୟ ବୈରାଗ୍ୟରେ
ମୋ' କର୍ମର ହୋଇ ମୂକ ସାକ୍ଷୀ ।
ମୋ' ସଂସାର ମାଟିରେ ଘୂଙ୍ଗୁରେ,
ହୁଏ ରଂଗହୀନ ।

କ'ଣ ବା ଘଟେ ପ୍ରତିଦିନ !
ଯାହା ନେଇ ଲେଖିହେବ ନାଟକ,
କବିତା !
ସେଇ ଏକା କଥା । ଚୌଡ଼ା ରାସ୍ତା,
ଶେଷ ଛକେ
ଧଳା ପୋଷାକର
ଟ୍ରାଫିକ୍ କନେଷ୍ଟବଲ ।
ହାତ ଦେଖାଏ, ସବୁଜ ସଂକେତ ହଏ ।
କିଂତୁ କାହିଁ ପଥ ? ? ?
ଯଦିଚ ସେ ବଡ଼ ରାସ୍ତା ସଂଗେ
ବହୁ ଅଂଧଗଳି ଏକୀଭୂତ ।
ଏବଂ ବହୁ ପାଦଚିହ୍ନ, ଦସ୍ତଖତ ପର ।

ଜୀବନଟା କ'ଣ ? ?
ଯାହା ବଂଚିଯାଏ
ନା ଯାହା ହୁଏ ଅତିକ୍ରମିତ
ବହୁଧା ମଂଚରେ ?
ମୁଁ କଣ କରିଛୁ ସୃଷ୍ଟି ସମସ୍ତ ଚରିତ୍ର
ନା ମୁଁ ହୋଇଚି ବହୁଧା ବିଭକ୍ତ
ସେମାନଂକ ମଧ୍ୟେ ?
ବ୍ୟକ୍ତିତାର ବିଷ୍ଣଜନେ ସ୍ତରେ ସ୍ତରେ,
ବିଭିନ୍ନ ପର୍ଯାୟେ ?
ମୁଁ ତ ଏକ, ପୁଣି ବହୁ,
ବିଖଂଡିତ-ସତ୍ତାର ପ୍ରତ୍ୟହ
ମିଳିଥିବା ସଂକ୍ଷିପ୍ତ ସାରାଂଶ,
ଜଳିଯାଏ ଯାହା ମୁହୁଃମୁହୁଃ
କ୍ଷିପ୍ର ସଂସାରେ, ଯଥା ପାଲଭୂତ,
ପାଦପ୍ରଦୀପର ଅଂତରାଳେ,
ହୁହୁଁ ହୁହୁଁ !!

ମିସନ୍ ରୋଡ୍
କଟକ-୭୫୩୦୦୧
ତା ୬।୫।୧୯୮୪

# କବିତାର କବର

—୧—

କବିତାର ଲକ୍ଷ୍ୟ ନିରନ୍ତତା ।
କଥାଟା ନିରାଟ ସତ୍ୟ,
ସନ୍ଦେହର ନାହିଁ ଅବକାଶ ।
ତଥାପି ଜୀବନ ଏବଂ ଜୀବନର ସମସ୍ତ ଆହ୍ୱାନ,
ସବୁ ଜଟିଳତା
ମୁକାବିଲା କରିବାକୁ ପଡ଼େ କବିତାକୁ—
ଯେଣୁ ତାହା ଜୀବର ସର୍ଜନା
ଯେଉଁ ଜୀବ ପ୍ରଥମେ ମଣିଷ,
ନୁହେଁ ସେ ବିଚ୍ଛିନ୍ନ ସତ୍ତା,
ସଂଯୁକ୍ତ ଏକକ ।

କବିତାର ଖପାହିଁ ବେଦନା
ଜନ୍ମ ଯାର ଅନନ୍ତ ମୁକ୍ତିରୁ ।
ବିବକ୍ଷିତ ଯାହା ହେଉପଛେ ।

ହେଉ ତାହା କ୍ରୌଞ୍ଚପକ୍ଷୀ
ଅବା କେଉଁ ଅତଂସ୍ପୃକ୍ଷପସ୍ପ ।

କବିତାର ନାଭିକେନ୍ଦ୍ର କେବଳ ଜୀବନ,
ଜନ୍ମ ତାର ମଣିଷର ପ୍ରକୃତ ପ୍ରଦେଶେ ।
(ଦେଶ କାଳ ପାତ୍ର ପରିବେଶେ)
କବିତା ବିମୌନ ହୁଏ ଯେତେବେଳେ
ସମସ୍ତ ବନ୍ଧନ ହୁଏ ଶେଷ
ମୁକ୍ତି ଆସେ ସହଜ ସ୍ୱଭାବେ
ଯେପରି ନିଃଶ୍ୱାସ ।
ବିମୁକ୍ତ ଚେତନା ତାର ଉତ୍ସ ।।

—୨—

ବସ୍ତୁଗ୍ଧ କବିତା, ଲତା !
(ଜନତାଙ୍କ କଥା ନ କହିବା ଭଲ)
ଲେଖୁଂଛି ଆଗ୍ରସ୍ତ ।
ଯିଏ ହୁଏ ଜନ୍ମ, ଯେ ହୁଏ ଆଗ୍ରସ୍ତ
ଦୁହେଁ ଆଜି ଏକାକାର ।
ସର୍ବେ ଆଜି ଘୂରି ଘୂରି ବୃତ୍ତ ପରି
ହୋଇଯାଂଛି ଏକ ।
ଯିଏ ଲେଖେ, ସେଇ ଗ୍ରୁପେ (ବା ଛପାଏ)
ସେଇ ବାଛେ;
(ସେଇ ବିକେ; ସେଇ କିଣେ)
ସେଇ ପୁଣି କରେ ମୂଲ୍ୟାୟନ ।
ବିଚିତ୍ର ବଜାର !!

କବିତାର ଘୋଷଯାତ୍ରା କେଉଁଠୁ କେଯାଏଁ
ନାହିଁ ତା ଠିକଣା ।
ଅଥଚ ବେଦନାହିଁ ତାର ଆତ୍ମା,
ପ୍ରକାଶ ଆଂଗିକ ।
କବିତା ସ୍ୱଳ୍ପ ଆଗକୁ, ଅଗକୁ ।
ଯେଣୁ ତାହା ମଣିଷର ଏକାଂତ ବ୍ୟାପାର
ଓ ବସ୍ତୁର ।
ମଣିଷ କି ବସିରହିପାରେ
ଥିଲା ଯେଉଁଠାରେ
ଅର୍ଥ ଆଉ ପ୍ରଥାର କିଂକର ।।

—୩—

କବିତାର ମୂଲ୍ୟ ବୁଝନ୍ତି ହେ ସମଝଦାର,
ହୃଦୟର ମୂଲ୍ୟ ଦିଏ ଅନେକ ହୃଦୟ ।
(ନୁହେଁ କେଉଁ ହାକିମ ବା ଧର୍ମାବତାର)
କବିତା ଯେ ବଡ଼ ମାୟାବିନୀ
ସ୍ଥାନ ସ୍ଥାନାଂତରେ ।

ତେଣୁ ଭାବେଁ
ଆଶ୍ଚର୍ଯ୍ୟର କଥା କିଛି ନାହିଁ,
ନିଜ ମାନ, ନିଜ ମୂଲ୍ୟ ନିର୍ଦ୍ଧାରଣ ପାଇଁ
ଓଡ଼ିଆ କବିତା ଯିବ ସୁପ୍ରିମ କୋର୍ଟରେ ! * ☐☐☐

ମିଶନ ରୋଡ଼, କଟକ-୭୫୩୦୦୧
ତା ୨।୯।୮୪

* ଛାତ୍ରାବସ୍ଥାରେ ଆଜକୁ ପ୍ରାୟ ୫° ବର୍ଷ ତଳେ "କବିତାର କବର" ନାମକ ଏକ କବିତା ଲେଖିଥିଲି । ତାହା 'ପାଂଡୁଲିପି' ପୁସ୍ତକର ଅଂତର୍ଗତ ହୋଇଛି । ବର୍ତ୍ତମାନ ପୁଣି ସେପରି ଏକ କବିତା ଲେଖିବାକୁ ପଡ଼ିଲା ଏହା 'ମୋର ଏବଂ ମୋ' ଦେଶର ଚରମ ଦୁର୍ଭାଗ୍ୟ । —ଲେଖକ

# କେବଳ ପିଂପୁଡ଼ିଟିଏ ଯଦି ଥାଂନ୍ତା·········

( ଇଂରେଜ ସ୍ମରଣେ )

ଶାଂନ୍ତିର କପୋତଟି ରୂପେ
ଉଡ଼ି ବୁଲୁଥିଲ ଏଣେ ତେଣେ,
ଆକାଶରେ ଶୁଭ୍ରତା ବିଛାଇ,
ହଠାତ୍ କୁଆଡ଼େ ଗଲ ?
ତୁମ ଡେଣା ଶବ୍ଦ ଶୁଭେ ନାହିଁ ।
ପଡ଼ିଥିଲ ସବୁଠାରେ ତୁମ ପକ୍ଷଛାୟା
ଜଳେ, ସ୍ଥଳେ, ପାହାଡ଼େ, ଶୂନ୍ୟରେ
ଏ ରାଜ୍ୟର ପ୍ରତିଟି କଣରେ ।

ହେଉ ତାହା ଗଂଗା ବା କାବେରୀ
ଅବା କପୋତାକ୍ଷୀ
ବାଂଲାର ମାୟାବିନୀ ନଦୀ,
ଦେବତାତ୍ମା ହିମାଳୟ
ଅଥବା ଆଲ୍‌ପ୍‌ସ
ହିମଗ୍ର ଶୃଙ୍ଗାଗ୍ର ଶିଖ
ମଣୁଥିଲ ନିରାପଦ ତୁମ ନୀଡ ସ୍ଥିର·······
ଶାଂନ୍ତିର କପୋତଟି ତୁମେ
କରି ଯାଉଥିଲ ନିଜ କାମ
ସ୍ୱଚ୍ଛଂଦେ ନିର୍ଭୟେ,
ମଣିଷ ଉପରେ
ରଖିଥିଲ ଅଗାଧ ବିଶ୍ୱାସ,
କାହୁଁ ଆସି ଆତତାୟୀଟିଏ
ଛପିଥିଲା, କରିବାକୁ ତା' ନେଇଥିଲା କାମ
ତାକୁ ହିଁ ତ ଜଣା ।
ହାୟ ! କେବଳ ପିଂପୁଡ଼ିଟିଏ ଯଦି ଥାଂନ୍ତା
ସାମାନ୍ୟ ପିଂପୁଡ଼ିଟିଏ,
ଗୁହ୍ନ କନା କାଟି ଦେଇଥାଂନ୍ତା

ଗୋଇଠିକି ତାର,

ହୋଇଥାଂତା ଲକ୍ଷ୍ୟ ଭ୍ରଷ୍ଟ କରାତର
ବଂଚି ଯାଇଥାଂତା କ୍ରୌଂଚ ପକ୍ଷୀ ।
ବଂଚି ଯାଇଥାଂତା ସମଗ୍ର ମଣିଷ
ଏକ ବଡ଼ ବିପର୍ଯ୍ୟୟ ହାତରୁ,
କିଂତୁ ହାୟ !
ସେଇ ସାମାନ୍ୟ ପିଂପୁଡ଼ିଟିଏ ନାହିଁ ବୋଲି
ସମଗ୍ର ଧରଣୀ ହୁଏ ଆଜି ଅଶ୍ରୁମୟ ।। □ □ □

ମିସନ ରୋଡ଼, କଟକ-୧
ତା ୧୨।୧୧।୧୯୮୪



# ପ୍ରିୟଦର୍ଶିନୀ

'ଆକାଶ ପରି ସବୁବେଳେ ଏକବଚନ' ।
ଧରଣୀ ପରି ସର୍ବସଂହା,
ସମସ୍ତ ସବୁଜ ବିଷ ପୃଥିବୀର
ଏକା ଏକା କରିଅଛ ପାନ ।
ତଥାପି ତ ରହିଛ ଅମ୍ଳାନ
ଅମୃତ ପ୍ରତିମା
ହୃଦୟର ନିଭୃତ ପ୍ରଦେଶେ
କୋଟି ଜନତାର,
ଆମରି ଏ ଅଶାଂତ ଗ୍ରହର ॥

କେତେ କ୍ଷୁଦ୍ର ସତେ ଏ ପୃଥିବୀ !
ମାଳ ମାଳ ବ୍ରହ୍ମାଂଡର ମଧ୍ୟେ,
ଏବଂ ମଣିଷ ବାଳଖିଲ୍ୟ ଗୋଟିଏ ଆକୃତି
ତା' ଭିତରେ,
ଏବଂ ସେଇ ଅଂଗୁଳିଏ ଆକାର ମଧ୍ୟରେ
କେତେ ପାପ, କେତେ ତାପ
କେତେ ହିଂସା, ଦ୍ୱଂଦ୍ୱ,
କେତେ ଅଂଧ ଇଚ୍ଛା
ଧର୍ମ ନାମେ, ଜାତି ନାମେ
ଲଭୁଛି ପ୍ରକାଶ
କେତେ ଅହଂକାର,
ନିଷ୍ଫଳ ଗରିମା,
ସୃଷ୍ଟି କରେ କେତେ ହିରୋସିମା
ପ୍ରତିଟି ହୃଦୟେ ।
ଯାହାକୁ କେବଳ
ପୋଛି ଦେଇପାରେ
ଶସ୍ତ୍ର ନୁହେଁ, ଶାସ୍ତ୍ର ନୁହେଁ,
ନୁହେଁ କେଉଁ ଅସ୍ତ୍ର,

ଅବା ଖାଲି କଥାରଂଗ୍ରତୁଣ୍ଣ;
କେବଳ ହିଁ ଶହୀଦର ପ୍ରତି ବିଂଦୁ ରକ୍ତ,
ତାର ବଳିଦାନ
ସେ ନାଆଁକୁ ପାରିଛି ଲିଭାଇ
ଇତିହାସେ କରି ଆଲୋକିତ ॥

ଅମର ଶହୀଦ ତୁମେ
ଜୀବନର ସର୍ବଶେଷ ଶିଖାର ଆଲୋକେ
ଦୂର କରିଅଛ ଅଂଧକାର
ପଂଚଭୂତେ ମିଶିଯାଇ,
ହୋଇଅଛ ନିଜେ ହିଁ ଉନ୍ମାଦ ।
ହେ ପ୍ରିୟଦର୍ଶିନୀ, ପ୍ରିୟଂବଦା, ପ୍ରିୟ ଅନ୍ୱେଷିଣୀ !
ତୁମ ପଦେ ମଣିଷର କୋଟି ନମସ୍କାର ।
ତୁମେଇ ତ ଏକାଧାରେ ବାଂଧବୀ, ଜନନୀ ॥ □□□

ମିସନ ରୋଡ଼,
କଟକ-୧
ତା ୧୦।୧୧।୮୪



# ଐରାବତ

ଐରାବତ, ବୃଷ୍ଟି କର ।
ସପ୍ତ ସ୍ୱରେ, ସାତ ପ୍ରକାରର ।
ଷଡ଼ଜ, ଋଷଭ ଆଦ୍ଦ ଧୈବତ,
                    ଗାଂଧାରେ,

ଗ୍ରାମ୍ୟ ବଧୂ ଦ୍ୱଏ ହୁଳହୁଳି,
ଝିଅମାନେ ଫୁଂକୁଛଂତି ଶଂଖ
ପିଲ୍ଲଏ ନାଚଂତି ଦାଂଢେ ଭିଜି ଭିଜି
                    ପ୍ରଥମ ବର୍ଷାରେ ।

ଇଂଦ୍ରମେଘ
ଘୁଞ୍ଚୁଛୁ ହୁଂକାର ତାଳବନ ଶିରେ ।
କାଶ ବଣ ହୁଲଏ ଗ୍ରୀମର ।।

ଶୁଖିଲା ଘାସର ଗଂଧ୍ରେ
                    ବଜାଇ ସାନାଇ,

ବର୍ଷା ଆସ,
ଏଇ ଫଟା ଭୂଇଁ ବାଂଧି କେଶ
                    ଦ୍ରୌପଦୀଂକ ପରି
ସିକ୍ତ କର ଆଦ୍ୟ ବର୍ଷଣରେ
ଖରା-ମରା ଧାନକ୍ଷେତ
                    ଉଠୁଛୁ ଉଚ୍ଛୁଳି,
ବନଭୂମି ନାଚଉଠେ ମୌସୁମୀ ପବନେ
                    ମୟୂର ନର୍ତ୍ତନେ ।।

ଐରାବତ, ବାହୁଆଣ ମେଘର ବୋଇତ,
ଆକାଶରୁ,
ଝରିପଡ଼ୁ ବୃଷ୍ଟି ଜଳ
                    ବନ-ଉପବନେ
ଶୁଷ୍କ ବୃକ୍ଷଲତା କର ଉଦ୍‌ଜୀବତ



କବିତା-୧୯୮୫

ଶ୍ୟାମଳ ରୋମାଂଚେ ।
ଯଦ୍ଦ୍ଵାରା ତୁ ନଷ୍ଟେସ୍ତ୍ୱ
ନୂଆ ଫଳ ଶସ୍ୟର ପାଳକ ॥

ଐରାବତ, ତୁ ବୃଷ୍ଟିର ବ୍ୟାଂକ୍ ।
ତୁହ୍ନ ପୁଣି ଋଣ,
ଦଗ୍ଧ ମୃତ୍ତିକାର ।
ଯେଣୁ ସବୁ ବାଷ୍ପ ଓ ଜଳ
କରନ୍ତୁ ହରଣ
ପୃଥ୍ୱୀର, ପ୍ରଚଂଡ ଗ୍ରୀଷ୍ମରେ ।
ଯାର ପରିଶୋଧ କରୁ
ବୃଷ୍ଟିର ଝଂକାରେ ।
ହେଉ ଋଣମୁକ୍ତ ।
ପୁଣି କେବେ ବଜ୍ର ବିଜୁଳିରେ
ସୃଷ୍ଟି କରୁ ଭୀଷଣ ଆତଂକ
ଯେଉଁପରି ଗୋଳାଭରା ଟ୍ୟାଂକ୍
ଶତ୍ରୁବାହିନୀର ।
ଐରାବତ, ତୋ' ବିରୋଧାଭାସ,
ଡାକିଆଣେ ପୁଣି ବନ୍ୟା ଓ ମରୁଡ଼ି,
ଏବଂ ହୁଏ ବହୁ ଶିଳାନ୍ୟାସ
ଗଢ଼ିଉଠେ ବଂଧ ଓ ବ୍ୟାରେଜ, ଆନିକଟ,
କଂକ୍ରିଟର ବୃତ୍ତ ।
(ନିର୍ବାଚନ ହେଲେ ସନ୍ନିକଟ,
ଅଧିକାଂଶ ପୁଣି ରହିଯାଏ କାଗଜର ସ୍ତଂଭେ ।)
ଐରାବତ, ତୁ ଯେ ପଥିକୃତ୍
ନବ ସର୍ଜନାର ।
ମେଘମଂଚେ ତୋର ନର୍ମ ନୃତ୍ୟ
ଭରିଦିଏ ପ୍ରାଣୀ ଆଉ ଉଦ୍ଭିଦ ଜଗତ୍
ଅପୂର୍ବ ଆନଂଦେ
ନବ ନବ ସୃଜନର ଛଂଦେ ।
ଦେବହସ୍ତୀ ! ମଣିଷର ସଘନ ପ୍ରଣତି
ତୁମ ପାଦେ ॥ □□□

# ବାଘ

ବାଘ, ମୁଁ ଦେଖିଛି ତୋର ମଖମଲ ଦେହ
ଏବଂ ସେହି ଦେହର ଦର୍ପଣେ
ମୋର ପିତୃପୁରୁଷଙ୍କ ମୁହଁ
ଯିଏ ତୋତେ ମାରିଥିଲେ ବର୍ଛାରେ, ଖଣ୍ଡାରେ
ମୁହାଁମୁହିଁ ବେଣାବଣର ପାଖେ
କିଂବା ଦୂରେ ଅଗନାଅଗନ ବନସ୍ତ ଭିତରେ ॥

କିଏ ଅବା ମାରିଥିଲେ ବନ୍ଧୁକ ଗୁଳିରେ
ଶିମୁଳି ମଞ୍ଚରୁ
ଲାଲ ଲାଲ ଫୁଲର ଶେଯରେ ।
ଜଣେ ପୁଣି ଯାଇଥିଲେ ତୋ'ର ପେଟରେ
ମଝିଆଁ କକେଇ ।
ତୋ' ଛାଲ ଝୁଲୁଛି କାନ୍ଥେ
ଆମ ଦାଣ୍ଡଘରେ ।
କେତେ ପୁଣି ଖାଇଲେଣି ଉଛ !
ପୁଣି ମୁଁ ଶୁଣିଛି ଅଜାଙ୍କ ମୁହଁରୁ
ତାଙ୍କର ପ୍ରତିଭାମନ୍ତ୍ର ତନ୍ତ୍ରସାଧନାରେ
ବାଘଦେଇ କରୁଥିଲେ ହଳ,
ମନ୍ତ୍ରବଳେ । ଚଢୁଥିଲେ ବାରବାଟି ବଲ ॥

ବାଘ ତୋର ହଳଦିଆ ବାସ୍ନା
ଆଉ ଧଳା ଗୁହାଣୀରେ
ଗୁନ୍ଥା ମୋର ପିଲାଦିନ ଅନେକ କାହାଣୀ,
ଅନେକ ସ୍ମୃତିର ଚିହ୍ନ ଲକ୍ଷ୍ମୀପାଦ ହୋଇ
ଅଙ୍କା ତୋ' ଦେହରେ, ଯେଉଁପରି
ମଗୁଶିର ମାସ ଗୁରୁବାରେ ।
ତୋ' ହେଣ୍ଟାଳ ଶୁଣାଗଲେ ମୋ' ବାଳୁତ କାନେ
ରାତିଅଧେ, କହୁଥିଲେ ମାଆ ଶୋଇପଡ଼ ।

ଏ ଆସିଛୁ ମଇଁଷି ସଂଧାନେ ଡଲସାହ୍ନମୁଂଡେ,
ଏବଂ ଆପୁଡ଼ାଇ ଦେଉଥିଲେ ମୋତେ,
ତେଜଦେଇ ଟିକେ ଲଣ୍ଟଣ ।।

ବାଘ, ମୁଁ ଚାହେଁନା ଦେଖିବାକୁ ତୋତେ
ସର୍କସ ହତାଂରେ,
ଅସଂଭବ ଆଲୁଅ ଓ ହଟ୍ଟଗୋଳ ମଧ୍ୟେ ।
ଅବା କୋଉ ଚିଡ଼ିଆଖାନାରେ ।
ହେବାକୁ ପରାନ୍ନଭୋଜୀ, ଭୁଂଜିବାକୁ
ହାତଚଟେକା ଆମିଷ ଆହାର ।
ତୁ ତ ଉଚ୍ଛିଷ୍ଟତ୍ୟାଗୀ, ଛୁଉଁ ନା ତୁ ଅନ୍ୟର ଶିକାର,
ଅବା ମୃତପଶୁ ।
ତୁ'ତ ମାଡ଼ୁନା କେବେ ସହରର ଗଳି
ଅବା ଇଟା କଂକ୍ରିଟର ପୁର ।
ତୁ କିଆଁ ଆସୁଥିଲୁ ନଂଦନ କାନନେ
ଅଜସ୍ର ଦେଖଣାହାରୀ ହାତତାଳି ଖାଇ
ଶୁଣିବାକୁ ହରିବୋଲ ନାଦ ?
ମୁଁ ଚାହେଁ ତୁ ରହିଥିବୁ ନିଘଂଚ ଜଂଗଲେ
ବେପରୱା ଖେଳୱାର୍ଡ଼ ହୋଇ ।
ମୁଁ ଚାହେଁନା ଧରାପଡ଼ି କାହାର ଫଂଦାରେ
ମୂଷାପରି ଚାହୁଁଥିବୁ କାତର ନୟନେ
କାରୁଣ୍ୟମୂରତି ।
ବାଘ, ତୁ କାହିଁକି ଗଲୁ ତୁଳସୀ ବଣକୁ
ହାତେ ଧରି ସୁବର୍ଣ୍ଣ କଂକଣ
ବିଷ୍ଣୁଶର୍ମା ବୋଲେ ବୃଦ୍ଧ ବୟସରେ ?
ସେ କ'ଣ ଜାଣଂତି ତୋର ହାବଭାବ,
ରାଜକୀୟ ଠାଣି !
( ସେ ନିରୀହ ଶିଶୁ ସାହିତ୍ୟିକ )
ମୁଁ ଚାହେଁ ତୁ ଠିଆହେବୁ, ହଲାଇବୁ ନଖ,
ନିଆଁପରି ଡିଆଁମାରି ଏ ପାହାଡ଼ୁ ଅନ୍ୟ ପାହାଡ଼କୁ···
ଖେଦିଯିବୁ ତୁ ବିଶ୍ୱବ୍ରହ୍ମାଂଡ,
ଏବଂ ଆଣିବୁ ଲୁଟି ହରିଣ, ଗୟଳ, ନୀଳଗାଈ ।
ଥାବାମାରି ଭୁଲାପ୍ୟାଜ୍ ପରି ତୋ' ପଂଝାରେ ।

ଏବଂ ଚଢ଼ି ବସି ଝୁଣିବୁ ତଂଟିକୁ ।
ରକ୍ତମୁହାଁ, ଆଗ୍ନେୟ କ୍ଷୁଧାରେ ।
ବାଘ, ମୁଁ ବି ଚାହେଁ ସମ୍ମୁଖ ସମରେ
କରିବାକୁ ତୋର ସାମନା ।
କିଂତୁ ନୁହେଁ ସର୍କସ ବେଢ଼ାରେ
ଅବା ଯାଦୁଘରେ ।।

ବାଘ, ତୋର ମିଂଜି ମିଂଜି ଆଖି
ଶୋଇବା ବେଳର
ଗିଲ୍ ଗଛ ତଳେ,
ମୋତେ ଡର ଲାଗେ ।
ମୁଁ ଭାବେ ତୁ ମାୟାବୀ କପଟୀ ।
ଛଳନା ପାଏନା ଶୋଭା ବାଘ ତୋହଠାରେ
କିଂବା ସ୍ଥବିରତା ।
(ତୁ ପଶୁ କ୍ଷତ୍ରିୟ !)
ଏହା ଡାଂକଦାଏ ତୋର ଢୁଂଗ ରାଜସଭା ।

ମୁଁ ଚାହେଁ ତୁ ଖାଡ଼ା ହେବୁ ଲାଂଜ ଝାଡ଼ି
ଜ୍ୟା-ମୁକ୍ତ ଧନୁ ପରି,
ଏବଂ ଝଂପଟି ଯିବୁ ପ୍ରବଳ ତେଜରେ
ଏ ମୁଂଡ଼ୁ ସେ ମୁଂଡ଼ ବନସ୍ଥଳୀ,
ହୁଲସ୍ଥୁଲ କରିଦେଇ ସମସ୍ତ ନିଖିଲ,
ଭୟରେ କଂପାଇ ସବୁ ଜାନୋୟାର
ଏବଂ ପକ୍ଷୀର ସଂସାର ।
ଏବଂ ଉଦ୍‌ବିଧଂକୁ ।
ତୁ ମାରିବୁ କୁଦା ଏଠାରୁ ସେଠିକି ।।

ଏବଂ ଦେଖିବୁ ମୁହଁ ଝରଣା ଜଳରେ
କିପରି ତା ଝଟକୁଛି ଖଡ୍‌ଗତେଜ ଭଳି ।
ପୁଣି ତୁ ଘଷିବୁ ପିଠି ବଳ୍‌କଳରେ

ପଲାଶ ଶଙ୍ଖର
ଝୁଁରୁ ଝୁଁରୁ ଅବର ଧୂଳିରେ
ମଂଜା ହୋଇ, ବିଚଣ ବେଶରେ ।
ବନସ୍ପତି ଭସ୍ମରେ ଅଶ୍ୱ ।
ଶେଷେ ତୁ ଗଢ଼ିବୁ
ତୋ’ ବଢଣ ସିଂହାସନ
କୁଡ଼ କୁଡ଼ ପ୍ରାଣୀଂକର ହାଡ଼େ ।
ଖଂଜରେ ଶୁନାଫୁଲ
ତୋ’ ପେଟରୁ କାଢ଼ି;
ସାନ ବୋହୂ, ଗୁଣା;
(ଫେରୁଥିଲା ଯେ କାଠ ମୁଂଡାଇ ସଂଜେ)
ଏବଂ କେତେ ଲୋକଂକର ମୁଦ ଓ ତାବିଜ,
ଏବଂ ଗଜମୋତି ।
କରିବୁ ରାଜୁତି କଚ୍ଛନ୍ଦନ ସୁଖେ ।
ତା’ପରେ ଯିବୁ ମରି
ବେତାଳଟି ଚାଲେ
ସବୁର ଅଦୃଶ୍ୟ
କେହୁ ତୋତେ ମାରିବା ଆଗରୁ ॥

ବାଘ ତୁ କି ଦେବ...
କାରଣ ତୁ ଦେ... ପରି
ପାପ ଏବଂ ପୁଣ୍ୟର ଊର୍ଦ୍ଧ୍ୱରେ ।
ହିଂସା ବା ଅହିଂସା ତୋତେ ଲାଗେ ନାହିଁ ।
ତୁ ଯେପରି ପଦ୍ମପତ୍ର...

ତୁ ତୋର ସ୍ୱଧର୍ମ ଶୁଦ୍ଧ ତୋ’ ତର୍କମା ।
ତୋତେ କହିବାକୁ ପଶୁ ଲଜ୍ଜା ହେବନା ଜଭ ।
କାରଣ ତୁ ଅଧେ ପଶୁ , ଅଧେ ବା ମଣିଷ;
ମୋ’ ପୂର୍ବପୁରୁଷ ।
ବୁଝିପାରୁ ଭଲ ମଂଦ ମୋଟାମୋଟି,
ଧର୍ମ ଓ ଅଧର୍ମ ।

ନୋହିଲେ ତୁ ସ୍ତଂଭରୁ ବାହାର
ଭିନ୍ନ ରୂପେ,
କାହିଁକ ବଦାର ଥାଂରୁ ନଖେ
ଦୈତ୍ୟ ଅଂତନାଡ଼ୀ ?
ଥିଲ ସେ ଉଦ୍‌ବୃତ୍ତଜୀବୀ,
ପଂଗପାଳ,
ଅଧର୍ମର ଗୋଟିଏ ଉପମା ।
ଏବଂ ଶୋଷଣର ଏକ ଶିରୋନାମା ॥ □□□

ମିଶନ ରୋଡ଼,
କଟକ-୧
ତା ୨୩।୯।୮୪

# ଭୂମିକା

ଭୂମିକା ନିଶ୍ଚୟ ଅଛି ଗୋଟେ ।
ଯଦିଚ ତା ଜଟିଳତା ।
ଯଦିଚ ତା ଦୁର୍ଗମ ପଥରେ ଚଲି ।
ଯାହାକୁ ମୁଁ ଛାଡ଼ି ଅନାୟାସେ
ବଛିନେଇପାରେ ଅନ୍ୟ ପଥ
ଦୁଇ ପଟେ ଯାର କଳ୍ପଲତା ଫଳଫୁଲ ଭରା ।
କିଂତୁ ମୁଁ ପାରେନା ॥

ଭୂମିକା ନିଶ୍ଚୟ ଅଛି ଗୋଟେ କିଛି ।
ନୋହିଲେ କିଆଁ ମହୁମାଛି
　　　କଂଟାରେ ରକ୍ତାକ୍ତ ହୁଅଂତା ?
ମୁଁ ଜାଣେ ମୃତ୍ୟୁ ଆସି ପ୍ରତିଦିନ
　　　ଚୁମା ଖାଇଯାଏ ମୋ'ର ଶିରେ ।
କହିଯାଏ ତୋ' ସଂସାର ତୋର ।
ଯଦିଚ ତା' ଅସ୍ଥିରତା ॥

ଏ କି କଥା
ସୋଜା ଓ ସରଳ କିଛି ନାହିଁ ।
ଯହିଁ ଦେଖ ଠେଲପେଲ,
　　　ଗୋଡ଼ ମକ୍‌ଲୁ ।
　　　(ଲାଇନରେ ନୁହେଁ)
ଶବ୍‌ଦର ବଜାର ।
ପ୍ରତିଟି 'ଦ୍ବିଜ ଦେଖେଁ ଏକ କାଉଂଟର' ॥

　　　ଜୀବନଟା ବିଷ ।
କବିତାର ଦଶମ ଧାଡ଼ିଟି ପରେ ଯେଉଁପରି
　　　ପ୍ରତି ଏକାଦଶ
ଲାଇନରୁ ହେବାଯାଏ ଶେଷ—
ବିରକ୍ତିକର ।
(ଏବଂ ପ୍ରାୟ ହାସ୍ୟକର ।)
କେବଳ ସେ ବାଙ୍ମୟ ପଂକ୍ତିଟି ହିଁ ଯାହା ସୃଷ୍ଟି ସାର ॥

ତଥାପି ମୋ' ସଂସାରକୁ ପଶିଆସେ ନୀଳ ମାଛ ।
ଈଶ୍ୱରଂକ ପରି ଔଦାସିନ୍ୟେ
ମୁଁ ତାକୁ ଦେଖେ ।
କହେ, ନୀଳ ମାଛ, ତୋ' ସଂସାର ଚୋର ॥

ପୁଣି ସେଇ ଏକ କଥା ।
ଅଂକ କଷା । ମାଣ ବସା ।
ଯେ ମାଣ ପୂରେନା ।
ଜୀବନଟା ଯେମିତି ବିସ୍ମାପଦହୀନ
ସୁଦୀର୍ଘ କବିତା ।
ସ୍ଥବିରତା ।
ନୃତତ୍ତ୍ୱ ବର୍ଣ୍ଣନା ! !
ମଣିଷର ମୂର୍ଦ୍ଧନ୍ୟ ଧ୍ୱନିଟି ଶୁଭେନାହିଁ ॥

ଅସୀମ ମୋ' ଧୈର୍ଯ୍ୟ-ରେଖା ।
ବିଷୁବରେଖାଠୁ ଦୀର୍ଘତର ।
ଦୁଇଭାଗ କରିଅଛୁ ଚେତନାକୁ ।
ଏକ ପାଖେ ନେତାର ବିଜୟ,
ଅନ୍ୟ ପାଖେ ଅସ୍ଥି ତାର ଦୀର୍ଘ ପରାଜୟ,
ମାଡ଼ଖିଆ ଖ୍ରୀଷ୍ଟଂକ ସୁଆଗ,
ଶନିବାରେ ପରାସ୍ତ କରାମାଟି ପରି
ଫେରଂତି ଯେ ଶୀତଲ ମୁହଁରେ
ରୁମାଲ ଉଡ଼ାଇ ।
ସରଳ ଓ ସହଜ ରୋମାଂଚ ଆଜି ନାହିଁ ।
ମଧୁଶଯ୍ୟା ପରିବର୍ତ୍ତେ ଅଛୁ ଖାଲି
ବିବାହ ବାର୍ଷିକୀର ଅଭିନୟ ॥ *

□ □ □

ମିସନ୍ ରୋଡ କଟକ—୭୫୩୦୦୧
ତା ୧ । ୯ । ୧୯୮୪

* ଉଭୟ ବଂଗର କେତେକ କବିଂକ କବିତାମାନ ପଢ଼ି ।
ଲେଖକ ।

# ମୋ'ଠାରୁ ମୁଁ ବଡ଼

ମୋ'ଠାରୁ ମୁଁ ବଡ଼
ଏ କଥାଟା ବୁଝି ମଧ୍ୟ
ବୁଝେନା କାହିଁକି ?
ଗଢ଼େ ବସି ଯେତେ ମୁଁ ନିଗଡ଼
ନିଜ ପାଇଁ, ସବୁ ହୋଇଯାଏ ଶ୍ରେଷ୍ଠ ।।

ପାଦର ଶାଂକୋଳି ପାଦରେ ଛୁଟେନା,
ହାତ ରହେ ମୁକ୍ତ,
ବାଂଧିଲେ ବି ଯେତେ ନାଗପାଶ ।
ଲେଖନୀଟା ମାନେ ନାହିଁ ବଶ ।
ରହିବାକୁ ଚାହେଁ ସଦା ସ୍ୱାଧୀନ ଉନ୍ମୁକ୍ତ ।।

ଯେତେ ମୁଁ ଗଢ଼େ ଅଳଂକାର
ନିଜ ପାଇଁ
ବାହୁକୁ କଂକଣ,
କାନକୁ କୁଂଡଳ,
ସବୁ କିଛି ହୋଇଯାଏ ମାପଠାରୁ ସାନ ।
ସତେ କ'ଣ ଏତେ ମୁଁ ବରିଷ୍ଠ ?
କ'ଣ ମୁଁ ନ ହୋଇଛି
ଅଫିସରଠାରୁ ଜନନେତା ଯାଏଁ
ସୌଦାଗର, ଗୃହସ୍ୱାମୀ, ଏଜେଂଟ, ବେଶ୍ୟା
କିଛି କିଂତୁ ସୁହାଇନି ମୋତେ ।।

ସବୁ ହୋଇ ମନେହୁଏ କିଛି ନୁହେଁ,
ଭିନ୍ନ ମଣେ ସାରାଟା ଦୁନିଆ ।
ମନେ ହୁଏ ଯେପରି ମୁଁ ପରବାସୀ,
ଆପଣା ଭୂଇଁରେ ।।

ମନେହୁଏ ସବୁଟା ଯେପରି ଏକ ଅକ୍ଟୋପସ,
ସାପର କୁଣ୍ଡଳୀ,
ଏବଂ ମୁଁ ହୁଏ ଛଟପଟ ।
ଏପଟ ସେପଟ
ଭାବେ ମୋର କେନ୍ଦ୍ର-ବିନ୍ଦୁ
ସତେ ଅବା ମୋ'ର ବାହାରେ ।
ହୋଇଯାଏ ସବୁଠୁ ବିଚ୍ଛିନ୍ନ,
ବଡ଼ ଏକୁଟିଆ ।
ବେଳେବେଳେ କରେ ପୁଣି ନିଜର ପ୍ରଚାର
ଢାଙ୍କିବାକୁ ନିଜର ଶୂନ୍ୟତା,
ଯଦିଓ ମୁଁ ସତେ ଦେବାଳିଆ ।
ତଥାପି ଜାହିର କରେ ନିଜକୁ କିଛିଟା
ଯେପରି କି ମୁଁ ଜାଲୁଘଣ୍ଟିଆ ।
ମୁଁ କିପରି ହେବି ମାପସିଦ୍ଧ ?
ଆଉ ଟିକେ ଅଣଓସାରିଆ,
କରିବି କି ଯୋଗାଭ୍ୟାସ,
ଯାଗ ଯଜ୍ଞ, ହୋମ
ଅବା ଅନ୍ତର୍ଦ୍ଦୃଷ୍ଟି ଧ୍ୟାନ,
ବ୍ରତ ଜପ, ତପ ??

କିନ୍ତୁ ହାୟ ! ତାହା ସଙ୍ଗେ ରହିବି ମୁଁ କିପରି ସ୍ୱାଧୀନ ?
କଷି ସେଇ ପ୍ରଚଳିତ ଅଙ୍କ
କିପରି ହୋଇବି ମୁଁ ନିଜଠାରୁ ମୁକ୍ତ ?
ବରଂ ବେଶି ହେବି ଶୃଙ୍ଖଳିତ ।
ଅନ୍ୟର ପ୍ରତୀକ ମଧ୍ୟେ ହୋଇ ମୁଁ ବଞ୍ଚିତ ।
ପୁନରାବୃତ୍ତିର ପଥ କେଉଁପରି ହୋଇବ ସ୍ୱଧର୍ମ ?
ପ୍ରତିଧ୍ୱନି କେଉଁପରି ହୋଇବ ମୂର୍ଦ୍ଧନ୍ୟ
ସ୍ୱର ମୋର ?
ମନେହୁଏ ମୁଁ ଯେପରି ନିଜ ଅଙ୍ଗୀକାର
କାଟିବାକୁ ସମସ୍ତ ଶୃଙ୍ଖଳ
ମୋ' ଭିତରେ ତା' ଅନ୍ତର୍ନିହିତ ।

ତାହାନ୍ଧିଁ ଭ କରାଇ ଦିଏନା ମୋତେ
ପ୍ରଚଳିତ ପ୍ରଥାର କାଂକର ।
ମୁଁ ହୁଏ ମୋ'ର ସକାଳ । ନିଜର ଆରଂଭ ।
ମୁଁ ହୁଏ ମୋ'ର ନିଶାଣ—
ବିଜୟୀର ଯେ ବିଜୟ ଆସେ ନିଜ'ଠୁଏଁ ।
ସେଥିପାଇଁ ଯୋଗ, ଯାଗ, ଯୁଦ୍ଧ ଅକାରଣ ।। □□□

# ଶବବାହକର ଗାନ

ମୁଁ ମୋର ଶବକୁ କାଂଧେ ବହି
କରୁଅଛୁ ବିଶ୍ୱ ପ୍ରଦକ୍ଷିଣ ।
ବାରାଣସୀ, ଗୟା, ଗଂଗା
ମେକ୍‌କା ଓ ମଦନା
ଓ ଜେରୁଜେଲମ—
ଯେଉଁଠି ଢନୋଟି ବୃକ୍ଷ
( ପାପ ଓ ପୁଣ୍ୟର )
ପଲ୍ଲବିତ ।
କଂଉ କାହିଁ ମୋକ୍ଷ ?
କିଏ ମୁକ୍ତିଦାତା ?
କିଛୁ ହିଁ ତ ପାରେ ନାହିଁ ଜାଣି ।
ଦେଖେ ଖାଲି ପୁରୋହିତ ଦଳ
କହୁଂଛ ଯେ ଏଟା କର ସେଟା କର,
ସେଟା କର ନାହିଁ ।
ସବୁ ମୋର ସ୍ୱଧର୍ମର ମଣେ ବିପରୀତ ।।

ମୋ'ର ଯାହା ଗଲା ମର—
ବଂଚିବାର ଯା'ର ନାହିଁ ଅଧିକାର ।
ତାହା ଲୁପ୍ତ ସମସ୍ତର ଶିକ୍‌ଦାନୀ ତଳେ,
ଯାହା ଅଛି ଜୀଇଁ ତା' ଚର ହଜୀବ,
ଆଜ ଆଉ ଆଗାମୀ କାଲର
ତାହା ଖଣ୍ଡଆନ୍‌, ଏକ ବୁନଆଦ,
ତାର ନାହିଁ କ୍ଷୟ କାରଣ ତା କାଳୋତ୍ତୀର୍ଣ୍ଣ
ପ୍ରଗତର ତାହାହିଁ ସହାୟ ।
ଯାହା ସ୍ଥାଣୁ ତାହାହିଁ ବଂଧନ ।
ବାଂଧିରଖେ ମୋତେ ଏକସ୍ଥାନେ,
ଏକ ମୁହୂର୍ତ୍ତରେ
ଯାହା ମ୍ରିୟମାଣ, କେଂଦ୍ରଚ୍ୟୁତ ।

କପଟ ବଂଚନ କନ୍ଥ
ସମସ୍ତର ଅପହୃତ ସେଇ ଶ୍ୱେତ
ନପୁଂସ କୌଳିନ୍ୟ !!
ମୃତ୍ୟୁ ଯାର ସ୍ୱତଃସିଦ୍ଧ
ଯେଣୁ ତା' ବଂଧନ ।
ମୋର ମୁକ୍ତି ମୋ' ହାତରେ
ତାହା ଚିର ଗତିଶୀଳ, ନୁହେଁ ସ୍ଥାଣୁ, ସ୍ଥିର ।
ଜୀବନର ମହାସ୍ରୋତ ସଂଗେ
ତାହା ଏକ ପବିତ୍ର ସଂଗମ ।।

ମୋର ଶବ ମୋ' କାଂଧରେ
ଯାହା ଅଟେ କାଳର ଉଚ୍ଛିଷ୍ଟ;
ଯାହା କ୍ଷୟଶୀଳ,
ଯେଣୁ ତାହା ଚଳେନା ଆଗକୁ
ପଡ଼ିରହେ ବହୁ ପଛେ, ଗତାୟୁ କଂକାଳ ।।

ମୁଁ କିଏ ନିଜକୁ ପଚାରେ ।
ମୁଁ ତ ଜଣେ, ପୁଣି ମୁଁ ଯେ ବହୁ ।
ମୋ' ମଧ୍ୟରେ ଅଛି ଛପି ବହୁ
ମହାସ୍ମୃତି
କାଳର ପ୍ରବାହ ।
ଯାହା କାଳୋତ୍ତୀର୍ଣ୍ଣ ମହାଜୀବନର
ସବୁ ପରମାୟୁ
କରିଅଛି ଠୁଳ ।
ମୁଁ ଯେ କାଳଜୟୀ ।
ମୋ' ଶବକୁ ଫିଂଗିଦିଏ ଅତୀତ ଗର୍ଭକୁ ।
ସମ୍ମୁଖର ମହାସ୍ରୋତେ ମୁଁ ଯେ ଭାସିଯାଏ ।।     □□□

କଟକ-୧
ତା ୩୦ । ୭ । ୧୯୮୪

# କେଂଦ୍ରବିଂଦୁ

ଏ ପଥ ସହଜ ପଥ—
ବିଶ୍ୱାସରେ ମିଳିଯାଂତି କୃଷ୍ଣ ।
ମୁଁ କିଂତୁ ଧଂଦିହୁଏ ନିଜ ପ୍ରଶ୍ନଜାଲେ,
          କେଉଁଥିରେ ହୁଏନା ବିଶ୍ୱାସ ।
ପ୍ରତ୍ୟୁଷର ବେଳାଭୂଇଁ
ଖସିଯାଏ ପାଦତଳୁ
ରହିଯାଏ ଏକେଲା ମଣିଷ ।
କେଉଁପରି କରିବି ବିଶ୍ୱାସ
ଯାହା ନାହିଁ—ଯାହା ଅଛି,
          ଥାଇ ମଧ୍ୟ ଯା ଶୂନ୍ୟ ପ୍ରକାଶ ।।

ପ୍ରଭୁ ତୁମେ କେଡ଼େ ଭାଗ୍ୟବାନ
ଜନ୍ମହୋଇ ମୋ' ମନରୁ
ହୋଇଅଛ ମୋ' ପରିପ୍ରକାଶ ।
ବ୍ୟାପିଅଛ ତ୍ରିଭୁବନ ପୁଣି ମହାକାଶ ।
ହୋଇଛ ତ ମୋର ପ୍ରଲଂବନ
ଚରାଚର, ଜଳ ଓ ବତାସ
          ପୃଥ୍ୱୀ ଆଉ କାଳ
ସର୍ବବ୍ୟାପୀ, ତ୍ରିଗୁଣ, ଅଶେଷ ।
ଜନ୍ମି ମୋ' ମାନସୁ
ହୋଇଅଛ ସେ ଅତିମାନସ
ମୋ' ମନର ଅତିରିକ୍ତ,
          ଅଜ୍ଞେୟ, ଅବୋଧ,
ବୃହତ୍ତର, ମହତ୍ତର ଏକ ପ୍ରତିଭାସ
          ଏକ ଭାବ-ସତ୍ତା ।
ହେ ପୁରୁଷ ! ତୁମକୁ ମୁଁ କଳିବି କିପରି
ମୋତେ ତୁମେ ଯାଇଚ ସେ ବଳି ?
ସହସ୍ର ସହସ୍ର
ବ୍ୟବଧାନ ରଚି ।।

ହୋଇଅଛ ସଗୁଣ ନିର୍ଗୁଣ,
ବସ୍ତୁ ଆଉ ମାୟା ସମାବେଶ ।
( ପ୍ରଭୁ ! ଯାଉଛ କି ଆଶ୍ରମରେ ଦିନ
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ସୋମରସ
କିଛି ତ ଅଭାବ ନାହିଁ ।
ସୋମପା, ଅଣୁପା ।
କେତେ ବେଶ, କେତେ ନା ଆଭ୍ରସ !
ଦାମୀ ପଥରର ସିଂହାସନ,
ସ୍ୱର୍ଣ୍ଣ ବାସ ।
ମୁଁ ଏଣେ ମରୁଛି ଦେଖ
ଅଭାବେ, ପୀଡ଼ନେ,
ନିତ୍ୟଦ୍ୱଂଦ୍ୱେ, ଅଂତର୍ଦ୍ୱଂଦ୍ୱେ ।
ସଂଗ୍ରାମ ସଂଘର୍ଷ
ମୋର, ଚିରସାଥୀ ।
ଅପୂର୍ଣ୍ଣତା ମୋର ସ୍ଥିରକେଂଦ୍ର
ଯେଣୁ ମୁଁ ମୁକ୍ତ ।
ଯେଣୁ ମୁଁ ହେଉଅଛି, ବଦଳୁଛି
ପ୍ରତିଟି ମୁହୂର୍ତ୍ତ ।
ମୋର ହତିଆର ହୁଏ ମୋର ସ୍ୱାତଂତ୍ର୍ୟ
ପୂର୍ଣ୍ଣତାର ଆବିଷ୍କାରେ
ଯାହା କେବେ ହୁଏ ନାହିଁ ପୂର୍ଣ୍ଣ ।
ମୋର କେଂଦ୍ରବିଂଦୁ ହାସ୍ୟ ଗଢ଼ିଅଛି
କେତେ ବଡ଼ ବୃତ୍ତ ।।

ମୁଁ କିପରି ହୋଇବି ସହଜ ?
ଦ୍ୱଂଦ୍ୱହୀନ, ଅଥଚ ବିମୁକ୍ତ !
ତୁମେ ମୋତେ କୃପା ଅବା କରିବ କିପରି ?
ତାରିବ କିମିତି ମୋତେ ଏ ଭବସାଗରୁ ?
ମୋ'ଠାରୁ ଜନମି ତୁମେ ଏଡ଼େ ବଡ଼,
ଏଡ଼େ ସୁମହାନ ?
ଆଉ ମୁଁ କ୍ଷୁଦ୍ରାଦପି କ୍ଷୁଦ୍ର
ଏକ ବିଂଦୁ ମାତ୍ର ।

ଗୋଟିଏ ମଣିଷ ।
ସଂଖ୍ୟା ସାର କେବଳ ମଣିଷ ।
ଆଉ କିଛି ନୁହେଁ ।
ଆଉ କିଛି ହୋଇ ବି ପାରେନା ।।

ଦେଖ, ମୁଁ କିପରି ଆକର୍ଷଣ
କରି ଆଣେ ମୋ' ମଧ୍ୟକୁ
ମୋର ବିସ୍ଫୋଟକୁ,
            ଯାହା ତୁମେ କରିଛ ହରଣ,
ଯାହାନେଇ ହୋଇଚ ବିରାଟ
ବ୍ୟାପିଅଛ ପୃଥ୍ୱୀ ଆଉ କାଳ
ସମସ୍ତ ଓ ନିଃସମସ୍ତ ।।

ଦେଖ, କେଉଁପରି ସଙ୍କୋଚନ
କରିଆଣେ ମୁଁ ନିଜକୁ
ହୋଇ ଯାହା ପ୍ରସାରିତ
ଚୁମ୍ବିଥିଲା ତ୍ରିକାଳ, ତ୍ରୈଲୋକ୍ୟ,
ଏବଂ ମୋର ସତ୍ତାର ସମୁଦ୍ର
ହୋଇଯାଏ ମାତ୍ର ଏକ ବିନ୍ଦୁ
ଯାହା ମଧ୍ୟେ ତୁମେ ହୋଇ ଲୀନ
ହୋଇଯାଅ ମୋର ଜୀବାଂଶୁ,
କ୍ଷୁଦ୍ରତମ ମୋର ଭଗ୍ନାଂଶ ।।

କଟକ-୧
ତା ୨୧ । ୩ । ୮୪

# ପ୍ରଶ୍ନ

ପ୍ରଶ୍ନ ସବୁ ପାଲଟଇ ପ୍ରତିପ୍ରଶ୍ନ
ଉତ୍ତର ସହିତ,
କିପରି କହିବ ହଁ-ନାହିଁ ।
ଯାହା ହଁ ତାହା 'ନାହିଁ' ଅନ୍ୟ ଅବସ୍ଥାରେ
କି ଭୀଷଣ ଏ ପରିବର୍ତ୍ତନ !
ପଟଭୂମି ଯାଉଛି ବଦଳି
ପ୍ରତି ମୁହୂର୍ତ୍ତରେ ।
ମୁଁ ଯେଣୁ ଗତିଶୀଳ
ମନେହୁଏ ସବୁ କିଛି ସବେଗ, ଚଂଚଳ
ଯେଉଁପରି ରେଲଯାତ୍ରୀ ଦେଖେ
ଗଛ ବୃକ୍ଷ ଧାଆଁନ୍ତି ପ୍ରଖର ।
ଯଦିଚ ତା ପ୍ରକୃତିରେ ସ୍ଥାଣୁ ।
ଏବଂ ଯାହା ସ୍ଥାଣୁ ତାହାହିଁ ବଂଧନ ॥

କିପରି କହିବ ଅଛି, କିପରି ବା ନାହିଁ ।
ସବୁ କିଛି ଓତପ୍ରୋତ ଜଡ଼ିତ ଏକାଠି,
ଦ୍ୱଂଦ୍ୱମୟ ସତ୍ତାର ବିକାଶ,
ଯଦିଚ ମୁଁ ଜାଣେ
ଅସତ୍ତାହିଁ ମୁକ୍ତିର କାରଣ ॥

ମୁଁ କିପରି ମୁକ୍ତ ହେବି ସ୍ଥାନ ଓ କାଳରୁ
କିପରି ପାଇବି ମୁକ୍ତି ଅସଂଖ୍ୟ ବଂଧନୁ
ହେବି ଦ୍ୱଂଦ୍ୱହୀନ,
ଏ ଆବିଳ ପଂକିଳ ଆବର୍ତ୍ତେ ?
କେଉଁପରି ହେବ ମୁହିଁ ନିଜର ପ୍ରତ୍ୟୟୀ
କେଉଁପରି କାଟିବି ମୁଁ ସବୁ ଦ୍ୱଂଦ୍ୱ, ଭୟ ?
ଯଦିଚ ମୁଁ ଜାଣେ
ମୁହିଁ ନିଜେ ମୋର ହତିଆର,
କାଟି ଦେଇପାରେ ଯାହା
ଅଜସ୍ର ବଂଧନ ଆଉ ନିଖିଳ ଜଂଜାଳ ॥

କାହାର କହିବ ଭଲ କାହାର ବା ମଂଦ ?
ଯାହା ଭଲ ତାହା ମଂଦ ଅନ୍ୟ ସମୟରେ ।
ଇତିହାସ ଫିଂଗିଦିଏ ତାକୁ ଡଷ୍ଟବିନ୍ ତଳେ
ଉଚ୍ଛିଷ୍ଟ ପତ୍ରିକା ।
ଭଲର ଶତ୍ରୁ ତ ମଂଦ ନୁହେଁ ।
ଭଲର ଶତ୍ରୁ ହିଁ ତାହା
ଯାହା ଅଟେ ତା'ଠୁ ବେଶୀ ଭଲ ॥ □□□

କଟକ—୧
ଜୁଲାଇ ୧୨, ୧୯୮୪

## ପ୍ରହେଳିକା

ପ୍ରହେଳିକା ହୁଏ ଗାଢ଼ତର ।
ଅଂଧକାର ହୋଇଯାଏ ଆହୁରି ଅଂଧାର ।
ପ୍ରଶ୍ନ ମଧ୍ୟେ ଜାଗେ ପୁଣି ପ୍ରଶ୍ନ
ଓଲଟ ପଚରା ହୁଏ ସମସ୍ତ ଉତ୍ତର ।
ଯାହା ନିତ୍ୟ ତାହା ଅପଭ୍ରଂଶ ।।

କାହିଁ ଆଦି କାହୁଁ ଅଂତ ସବୁ ଅଗୋଚର ।
ମଧ୍ୟଗ୍ରାମେ  ଘର ଯାହା  ସେତିକ ଗୋଚର ।
ସେ ଘରେ ଛପର ନାହିଁ ଝଡ଼ ବତାସରେ
ସବୁତ ଗଲଣି ଉଡ଼ି, ଯିବ ଅବଶେଷ ।
କେଉଁଠୁ ଅଇଲି ମୁହିଁ, ଯିବି ପୁଣି କାହିଁ
ନିଜକୁ ମୁଁ ଚହ୍ନେ ନାହିଁ, ଅଦ୍‌ଭୁତ ବାଟୋଇ ।
ପ୍ରତି ମୁହୂର୍ତ୍ତରେ ମୁହିଁ ଯାଉଛି ବଦଳି
ସେଇ ବଦଳିବା ମୋର ଧର୍ମ ଓ ଶାଂକୋଳି ।।

ମୁଁ କିଆଁ ରହୁନି ସ୍ଥିର, ଅଚଂଚଳ , ସ୍ଥାଣୁ
କେତୋଟି ପ୍ରତୀକ ମଧ୍ୟେ ବଂଦୀ ହୋଇ ଚିର
ଯାହା ପୂର୍ବପୁରୁଷଂକ ଥିଲିକ ଭିଆଣ,
ଦୋହରିଇ ସିବେ ଯା'କୁ ମୋର ବଂଶଧର,
ସେଇସବୁ ନାମାବଳୀ, ଚଲି ବାଟ ଗୁଳା
ମୁଁ କିଆଁ ହୁଡ଼ୁଚି ଏତେ ? ମୁଁ କିଆଁ ବାଉଳା
ହୁଏ ଏତେ ଥାକ, ଗଳି କଂଧି ଓ କୋଣରେ
ସୋଜା ରସ୍ତା ଭୁଲିଯାଇ ଯାହା ନାକତଳେ
ପରିଷ୍କାର ଲଂବିଯାଏ; ବାହୁଡ଼ା ବେଳରେ
ଉଦୟାଚଳରୁ ଅସ୍ତାଚଳ ଯାଏ –
ଶୂନ୍ୟ ଶୂନ୍ୟାଂତରେ—
ମାନଚିତ୍ର ପରି ଯାହା ଦେଖାଏ ନିଜକୁ,—

ମୋର ବସ୍ତୁତ୍ୱ, ଜଳ, ସ୍ଥଳ ପୃଥୁ *

ଓ କାଳରେ

ପୁଣି ମୋର ସଂକ୍ଷିପ୍ତ ସାରାଂଶ,

ବହୁଫଳ ପ୍ରାପ୍ତେ ଯାହା ଅସମାନ

ସମସ୍ତର ଜଳଧି ସେପାରେ

ଯାହା ମୋ' କାରଣ ।

କି ହେବ ବା ଜାଣି ପରିଚୟ

କଣ ହେବ ସୁସ୍ପଷ୍ଟ ଉତ୍ତର

ଯାହା କାଲି ବଦଳିବ, ହୋଇଯିବ ଭୁଲ ।

ମୋର ସତ୍ୟ ଲୋଡ଼ା ନାହିଁ, କାରଣ ତା ରୂପାଂତର

ଯାହା ହୋଇ ଚାଲିଅଛି ଏବଂ ଯା ହୋଇବ

ଏ ରାତି ପାହିଲେ, ଯାହା ଆଜି ଚିଂତାର ବାହାରେ ।।□ □ □

କଟକ—୧

ତା ୨୫ । ୫ । ୮୪

---

* ପୃଥୁ = Space

# ସଂପର୍କ

ସୁଖ୍ୟାତ ଶୁଣିଚ ।
ଶ୍ୟାମାଂଗୀ; ଆଇଭି ଲତା ।
ବୁଦ୍ଧି ଅଛୁ ।
ସୁକେଶିନୀ କହ୍ନ ହେବ
ନରେଖି ଦେଖିଲେ ।।

ହଠାତ୍ ମୋ ଦେଖା ହେଲା
ସାହିତ୍ୟ ମଂଚରେ
ଅଟୋଗ୍ରାଫ୍ ନେବାର ଛଳରେ ।
ତା'ପରେ କେତୋଟି ଚିଠି
ଗାଢ଼ ରାଢ଼ତର ।
ଶେଷଟିରେ ଆସିଛୁ ବରାଦ
ଫଟୋଗ୍ରାଫ୍ ପାଇଁ ।।

ଦିନ ଯାଏ ।
ତା' ପରେ ଶୁଣିଲି ମସ୍ତ ଅଧ୍ୟାପିକା
ଏବଂ ବହୁଦିନ ନୀରବତା ପରେ
ଗୋଟିଏ ନିବିଡ଼ ଚିଠି—
ସାର୍ ପଂଚ୍ଛନବେ ବର୍ଷର କବିତା
ଉପରେ ଲେଖୁଚି ନିବଂଧ
ରାଧାନାଥଠାରୁ ସୌଭାଗ୍ୟ ପର୍ଯ୍ୟଂତ
ଆପଣଂକ ଜାଗା ଖୁବ୍ ବେଶୀ
ତା' ଭିତରେ ।
ଆପଣଂକ ପରାମର୍ଶ
ଏବଂ ସାହାଯ୍ୟ
ସବୁଠାରୁ କାମ୍ୟ ।।

ମୁଁ ଲେଖିଲି; ଯାହା କାମ୍ୟ
ତା' ନୁହେଁ ସୁଲଭ ।

ମୁଁ ଯାଉଛି ବିଦେଶ ଯାତ୍ରାରେ
ଦୀର୍ଘଦିନ ପାଇଁ ।
ଅନ୍ୟ ଲୋକ ଦେଖ ।
ତା' ପରେ ଦୀର୍ଘ ନୀରବତା ।।

ଦିନେ ଦେଖେ ନିଗୁଟିଆ ଦି'ପହରେ
ନିର୍ଧୂମ ଖରରେ
ଅସ୍ତବ୍ୟସ୍ତ ବେଶେ
ଆବିର୍ଭାବ ତାର
ସକାଳ ବଯ୍‌ରେ ।
ଛଳଛଳ ଆଖିରେ କହିଲା
ସାର୍, କିଛି ଭଲ ଲାଗୁନାହିଁ
କବିତା ଫବିତା ।
କ୍ଲାସ୍ ନେବା ଧରାବଂଧା ଗତ ।
ମୁକ୍ତି କାହିଁ ଏ ଯଂତାରୁ ?
ବାଟ କିଛି ଦିଅଂତୁ ବତାଇ ।।

ମୁଁ କହିଲି, ବାହା ହୋଇପଡ଼
ଭଲ ଜାଗା ଦେଖି ।
କିଛିଟା ପାଇବ ଶାଂତି
ପ୍ରଥମେ ପ୍ରଥମେ ।
ତା'ପରେ ଦିହସୁଦ୍ଧା ହୋଇଯିବ
ସବୁ କିଛି ।
ଚାହିଁଲେ ବି ଯଂତାରୁ ଫିଟିବ ନାହିଁ ।
ନିରାପଦ ସ୍ଥାନ ।
ଆଶ୍ୱସ୍ତ ନିଖିଲ ।।

ସେ କହିଲା, ଝାଳ ପୋଛି
ତେବେ କ'ଣ ହେବ ଆମ ସଂପର୍କର ?

ମୁଁ କହିଲି ସମ୍ପର୍କ ତ
ନିଶ୍ଚୟ ରହିବ କିଛି ଗୋଟେ ।

ଛଠି ଫିଟି ଦେବ
ନୂଆବର୍ଷ ବଧାଇ ଜଣାଇ !
ଅଥବା ଇମିତ,
ଉତ୍ତରର ଅପେକ୍ଷା ନ ରଖି
କାରଣ ମୋତେ ବି ତ ଆଉ ଏ ସବୁ
ଭଲ ଲଗୁ ନାଇଁ ।
ମୁଁ ବଡ଼ କ୍ଲାଂତ ।।

ସେ କହିଲା : ସାର୍ ବର୍ଷା ହେବ ।
କାରଣ ଆଜିର ଏ ଖରାଟା
ଦେଖୁନାହାଂତି ଆପଣ,
କିପରି ଅସହ୍ୟ ।।

ମୁଁ କହିଲି ନୁହେଁ ପିତା ନୁହେଁ ବି ପ୍ରେମିକ
ଏ ଝିଅଂକୁ ସ୍ଥାନ
ତମ ଜୀବନରେ —
ସତରେ ଅସହ୍ୟ ।
ଭାଂଗିଯାଉ ଅସତ୍ୟ ସପର୍କ ।।

ସେ ଉଠିଲା ଆଖି ପୋଛି,
ଦଶଟା ବସ୍‌ରେ ଯିବ ।
ଉପରେ ପ୍ରଚଂଡ ଖରା,
ତଳେ କଂରୁ ମେଦିନୀ ଫାଟିନ ।।

ଜୁଲାଇ ୧୯୮୪
କଟକ-୧



# ଦେଖା ଓ ଅଦେଖା

ଦେଖା ହେଲେ କର ନମସ୍କାର
ସମ୍ଭ୍ରମରେ ପୃଚ୍ଛ,
ଏବଂ ପରସ୍ପର କମିତ ଅଛଂତି ?
କେତେବେଳେ ଘରେ ଥିବେ
ଇତ୍ୟାଦି ଇତ୍ୟାଦି ।
ଟେଲିଫୋନ ନଂବରଟା ଦେବେ ?
(ପ୍ରଥମଟା ଆଶାପ୍ରଦ, ଶେଷଟା ନୈରାଶ୍ୟକର
କାରଣ ଟେଲିଫୋନ କଥା ପବନର ଘର ।)

ଆଉ ଯାହା କହ ସେଇ ଏକ କଥା ।
ପରୀକ୍ଷାର ଖାତା······ସ୍ୱୀପଣ ବ୍ୟସ୍ତ ତା·········
ସ୍ବ' କରୁ କରୁ ବେଳଗଲା ।
ତଥାପି ତ ଲେଖିଲିଣି ଦି'ଟା ଅଧ୍ୟାୟ
ଜାଣେ ନାହିଁ କେବେ ଶେଷ ହେବ
ଭଗବାନଂକର ଇଚ୍ଛା ।।

ତୁମେ ଯେବେ ଥିଲ ଗର୍ଭବତୀ
ନିଶ୍ଚୟ ତ ଖାଇଥିବ ମାଟି
ଏବଂ ଜାଣିଥିବ ମାଟିର ବାସ୍ନା
ଯାହା ନ ଖାଇବା ଜଣାଯାଏ
ସତେ କେତେ ମନମତାଣିଆ ।
କେଉଁପର ଭୁଲିଯାଅ ସେ ମାଟିର କଥା
ତା'ର କବିତା, କାହାଣୀ
ଯାହା ନଣ ପର ଡାକେନା ବୁହାଟି,
ଯାର ଭାଷା ନୀରବତା ।

ତମ ଶୈଶବେଳ
ଯାହା ନଗ୍ନତିଆ
ଦବୀରେ ସୁନାବୁରସିଟି ପର
ନିଜକୁ ବି ଭୁଲିଯାଏ,
ଯାହା ହୃଦୟର ସମସ୍ତ କୈବଲ୍ୟ

ଏବଂ ଯଂତ୍ରଣାକୁ ଧରି ରଖେ,
କରେ ତା ପ୍ରକାଶ ।
ଯେପରି ଆକାଶ ।
କିଛି ନାହିଁ, ତଥାପି ସବୁ ସ୍ୱର
ଓ ଶବ୍ଦ ସେଇଠୁ ବାହାରେ ।
ଶୂନ୍ୟରୁ ହିଁ ନାଦ ॥

ତୁମର ପ୍ରମାଦ ତୁମେ ନିଜେ ।
ଯେଉଁପରି କୁହୁଡ଼ିଆ ଶୀତର ସକାଳ
ଛଂଦ ହୋଇ ନିଜ ମାୟାଜାଲେ
ନିଜକୁ ଭାବଇ ଅଂଧକାର ॥

ମିସନ ରୋଡ଼,
କଟକ-୧
ସେପ୍ଟେଂବର, ୧୯୮୪

# ସର୍ପ ଓ ରଜ୍ଜୁ

ଧୂଆଁର ଶଗଡ଼ଗାଡ଼ିଟିଏ
ସନ୍ନ୍ୟାସୀର କମଣ୍ଡଳରୁ ବାହାରି
ମୁଁ ଘୂରି ବୁଲୁଛି ଜଳେସ୍ଥଳେ
ଆକାଶରୁ ପାତାଳର ଯାଏଁ,
ପ୍ରେତ-ଛାୟା ପକାଇ ।
କିନ୍ତୁ ସେମାନେ ଦାହ କରି ନାହାନ୍ତି ଏଯାଏଁ
କେଜାଣି କାହିଁକି ସେମାନଙ୍କୁ ଜଣା ।
ସେତିକି ଦୂର ତ ସେମାନେ ଯାଇପାରିଥାନ୍ତେ
କେବଳ ସେତିକି ଦୂର, ମୋ ସାଙ୍ଗରେ ।
ଭାଇବନ୍ଧୁ, ପୁତ୍ର, ମିତ୍ର, କଳତ୍ର ॥

ମୁଁ ତ ପଦ୍ମପତ୍ର ଜଳ
ମୁଁ ଥାଏ ବା ନଥାଏ କଣ ଅଛି !
ଶିଶୁମାନେ ଯାଉଛନ୍ତି
ବର୍ଷାରେ ତିନ୍ତୁଛନ୍ତି,
ମୁଁ କଣ ତାଙ୍କ ପାରିବି ଛତ୍ର ଟେକି,
କି ଫଣାରେ ଅନନ୍ତ ନାଗ ପରି !
ମୁଁ ତ ଧୂଆଁ, ଧୂଆଁର ଶଗଡ଼ଗାଡ଼ିଟିଏ ।
ମୁଁ କିଛି ନୁହେଁ, ମୁଁ କେହି ନୁହେଁ ।
ବୃଥା ଅହମିକା ।
ମିଥ୍ୟା ଏ ଜଗତ୍ ।
ଏ ସୃଷ୍ଟି ପ୍ରପଞ୍ଚ ମାୟା
ଯେଉଁପରି ସର୍ପ ଓ ରଜ୍ଜୁ ।
ସବୁ ଆପେକ୍ଷିକ ।
ସବୁ ମୋହ, ସବୁହିଁ ଲୌକିକ ।
ମୁଁ ତ ନାହିଁ, ମୋର ଦାନ୍ତପାଟି,
ଆଖି କାନ ନାକ ସବୁତ ନେଲଣି କାଳ,
ମୁଁ କହିବି କିସ ?
କାହିଁ ନିର୍ବିଶେଷ

କାହିଁ ପୂର୍ଣ୍ଣ ଯାହା ଆଜିକାଲି, ସର୍ବଦା ସମାନ ।
ମୁଁ ତ ନାହିଁ, ସତ୍ତା ମୋର ମାୟାର ଭିଆଣ,
ଅସତ୍ତା କି ସତ୍ୟ ନୁହେଁ, ସମସ୍ତ ବିଭ୍ରମ ।
ତଥାପି ମୁଁ ଖୋଜୁଛି ସେ ପୂର୍ଣ୍ଣ,
ସେ ଖୋଜିବା କେବଳ ଜୀବନ ॥

ଲଂଡ଼ନ
ଜୁଲାଇ ୧୨, ୧୯୮୫



# ବିମାନର ମୃତ୍ୟୁ

( ଲଂଡନରୁ )

ସାମନାରେ କିଏ ତୁମେ ଛୁଡ଼ା ହୋଇଚ ନେଳି ପତାକା ଧରି ?
ଘୁଂଚି ଯାଉଚ ପୁଣି ବାଟ ଓଗାଳୁଛ ।
ବାୟୁମଂଡଳ ସ୍ଥିର ।
ସମସ୍ତ ଗତିହୀନ !
ତୁମେ କଣ ମରୁତ୍ ନା ବ୍ୟୋମ ?
ତୁମେ କଣ ଯମ ?
ତୁମେ କିଆଁ ବାଟ ଓଗାଳୁଛ ?
ସମସ୍ତଙ୍କୁ ବୋହିନିବାକୁ ଦିଅ
ବାୟୁକୁ କହ ପ୍ରବାହିତ ହେଉ ।
ଶାଂତ ହେଉ ମହାସମୁଦ୍ର ॥

କେତେ ଦେଶ, କେତେ ପ୍ରଦେଶ,
କେତେ ଭାଷା ଓ ଜନପଦ
ଏଠି ଏକୀଭୂତ
ଏକ ମହାସ୍ଥାମୀସ୍ତୂପରେ ।
କେତେ ସ୍ପଂଦନ, କେତେ ଜୀବନ
କେଂଦ୍ରୀଭୂତ ଗାଢ଼ ନୀଳିମାର
କେଂଦ୍ରବିଂଦୁରେ ।
ମହାପ୍ରସ୍ଥାନର ପଥ ଲଂବି ଯାଇଛି
ଅଜ୍ଞାତରୁ ଅଜ୍ଞାତକୁ……
ପ୍ରତି ତୋରଣରେ ଦେଖେ ସେମାନଂକ ନାମ
ଅଶ୍ରୁମୂର୍ଛର ଅକ୍ଷରରେ ॥

ସେମାନଂକୁ ପୃଥକ କର ନାହିଁ
ପରସ୍ପରଠାରୁ, ସେମାନଂକୁ ଧରି ରଖ, ଧରି ରଖ
ଆକାଶର ଆତିଥ୍ୟ ମଧ୍ୟରେ ।
ନାସ୍ତିତାର ବିଳାସିତାରୁ ସେମାନଂକୁ ରକ୍ଷାକର ।
ଆତସବାଜି ପରି ଫୁଟାଅନା ଫାଂକା ଆସମାନରେ ॥

ତୁମେ କଆଁ ବାଟ ଓଗାଳ ନେଳ ପତାକା ଦେଖାଇ ?
ସମସ୍ତକୁ ବୋହୁସିବାକୁ ଦଅ ।
ଶାଂତ ହେଉ ସବୁ ଆର୍ତ୍ତି, ସବୁ ଭସ୍ମ,
ଘନ ଘୃଣ ମ୍ଳାନ ଅସ୍ଥିରର ନୀଳ ମଂଡଳରେ ।
ଦେଖ ତାରଖର ମାଳରୁ ଖସିଯାଇ
ଭସ୍ମାର୍ତ୍ତ ମିନାଟ୍‌ର ସିଢ଼ି ଡେଇଁ
ସେମାନେ କମିଛ ମିଶି ଯାଉଛଂତି ମହାକାଳରେ
ଧୂଆଁ ପରି ॥ □□□

ଲଂଡନ
୧୦-୭-୮୫



# କ୍ୟାନସର ଓ୍ୱାର୍ଡ଼ରୁ

ଅକ୍ସିଜନଗୁଡ଼ାକ ଏଡ଼େ ପିତା !
ନର୍ସ କହୁଥିଲେ ଏଣିକି ଅକ୍ସିଜନ ଖୋଲିବା । ଖୋଲୁ ।
ହେଇ ନର୍ସ—ସୁମିତ୍ରା, କେଡ଼େ ଶୁଭ୍ର !
ତାର ଅମ୍ଳାନ ସ୍ୱଚ୍ଛତାରେ ବୁଡ଼ିଗଲି ।
ଏବେ ସବୁ ଜଣଣ କମିଥ ଢ'ଢ'ଟା ଦଶୁଛି ।
ହେଇ, ଢ'ଢ'ଟା ସୁମିତ୍ରା, ଢ'ଢ'ଟା
ପାଖ ପନ୍ଦର ନମ୍ବର ବେଡ୍‌ର ସ୍କୁଲ୍ ଶିକ୍ଷକ
ନୀଳାମ୍ବର ବାବୁ ।
ଗଲା ମାସରେ ଏଇ ଝରକାରୁ
ଯେତେବେଳେ ତଳକୁ ଦେଖୁଥିଲି
ସାନ ସାନ ଚଢ଼େଇମାନେ ଘାସମୂଳ ଖୁମ୍ପୁଥିଲେ ।
କେଇଟା କଙ୍କି ବସିଥିଲେ ବାକ୍ସଗଛ ପତ୍ର ଉପରେ ।
ନଈକୂଳ ରାସ୍ତାରେ ଝିଅମାନେ ଯାଉଥିଲେ
ହସରେ ଲେଟିପଡ଼ି...... ।
ନା, ପୃଥିବୀଟା ମନ୍ଦ ନୁହେଁ
ବେଶ୍ ବଞ୍ଚିଯାଇପାରେ ଏଠି ।
ହେଇ ପାଖ କାନ୍ଥରେ କେଇଟି ପିମ୍ପୁଡ଼ି
ଏବେ ବେଶୀ ବେଶୀ ଆପଣାର ଲାଗୁଛନ୍ତି,
ଯେମିତି କେତେ ନିକଟର କେହି ।
ସେମାନେ ତ ଏଠି ରହିବେ ।

ଆଉ ଦୁଇ ଘଣ୍ଟା ପରେ ସମସ୍ତେ ଆସିବେ ।
ଫଳ, ସାଗୁ, କ୍ଷୀର ଧରି ।
କିଛି ଖାଇବାକୁ ଆଉ ଇଚ୍ଛା ହେଉ ନାହିଁ ।
ପେଟ ଭିତରେ ନାଡ଼ୀଗୁଡ଼ାକ ଖାଇଗଲାଣି ।
ତଥାପି ସ୍ତ୍ରୀ କହିବେ ଖାଅ ଖାଅ ।
(କାଲି ରାତିରେ କଣ୍ଠୁ ଭୀଷଣ ଭୋକ ହେଲା,
ମନେହେଲା ବ୍ରହ୍ମାଣ୍ଡ ଜାଳିଦିବ କ୍ଷୁଧାରେ ।
ଏ'ମା କି ରାକ୍ଷସୀ କ୍ଷୁଧା !

ଥାଳୀଏ ଖେଚଡ଼ି ଏକ ଗ୍ରାସରେ
ଖାଇଦେବାକୁ ଇଚ୍ଛା ହେଲା······)

କାଲି ଝିଅ ଫୁଲ ଆଣିଥିଲା,
କହିଲା ବାପା ଆମ ଗେଂଡୁଗଛ
ଫୁଲରେ ନଇଁ ପଡ଼ୁଛି ।
ଗୁଂଦ ଗାଈ ଫଳ ଦେଇଚି ।
(ନଅ ନଂବର ବେଞ୍ଚ୍‌ର ପାନ ଦୋକାନୀଟି
ଗଅଁ ଗଅଁ କରୁଛି । ଖାଲି ଅନର୍ଗଳ କାଂଦ ।
କ'ଣ ନବ କ'ଣ ଛାଡ଼ିଯିବ ସିଏ ! ଗାଲ
ପାଚି ସବୁ ଉଡ଼ିଗଲାଣି । ଶବ୍ଦ ଭସ୍‌ଭସ୍ ପଳାଉଛି ।
କିଛି ବୁଝାପଡୁ ନାହିଁ ।)
ଭାଇ, ବଂଧୁ, ସ୍ତ୍ରୀ ପିଲା, ଖୁଡ଼ୀ ପୁତୁରା
ସମସ୍ତେ ଆସିବେ ।
ବେଶ୍ ଏଇଯାକେ ତ ସେମାନେ ଆସିବେ ।
ଏଠୁ ଆଉ ପାଦେ ବ ଆଗକୁ ନୁହଁ ।
ତା'ପରେ ମୁଁ ଏକା
ଏକାହିଁ ଯିବାକୁ ହେବ ମୋତେ ।
କିଂତୁ କୁଆଡ଼େ ? କୁଆଡ଼େ ?
ସେଇ ବୁଦୁବୁଦୁକିଆ ନଈ ପଠା
ଝଂକା ବରଗଛ କୋରଡ଼ରେ ସବୁରେ
ପେଚା ବୋବାଏ
କାଲୁଆଂକ ରଡ଼ି ।

କେତେ ଗୀତା ପଢିଛି
ଜୀର୍ଣ୍ଣ ବସ୍ତ୍ର ଛାଡ଼ି ନୂଆ ବସ୍ତ୍ର ପିଂଧିବା କଥା
କିଂତୁ କିଛିରେ ମନ ଲାଗୁ ନାହିଁ ।
ଆହୁରି ବେଶୀ ବେଶୀ କାଂଦ ମାଡ଼ୁଛି ।
ମୋତେ କ'ଣ ଡର ଲାଗୁଛି ?
ଏକେଲା କ'ଣ କରିବ ?
କୁଆଡ଼େ ଯିବ ? କୁଆଡ଼େ ?  □ □ □

ଲଂଡନ
ତା ୧୨-୬-୧୯୮୫

# ନିଜ ଭୂମିରୁ........

ମୁଁ ନିଜ ଭୂମିରୁ ଯେତିକି ଦେଖୁଚି ଯଥେଷ୍ଟ ।
କ'ଣ ହେବ କୁତବମିନାରରେ ଚଢ଼ି
ପିଂପୁଡ଼ିଂକ ପରି !
ମୁଁ ବେଶ୍ ଦେଖି ପାରୁଚି ମୋ'ର ପରିମଂଡଳ—
ଆଂବ, ନଡ଼ିଆ କଦଳୀ ଗଛର ଧାଡ଼ି
ଲଂବିଯାଇଚି ବଣଖୁଂଟ ପର୍ଯ୍ୟଂତ
ଗାଡ଼ି ମୋଟର ରିକ୍ସା
କୋର୍ଟ, କଚେରି, ସ୍କୁଲ, କଲେଜ
ପାର୍କ ବଜାର ହସପିଟାଲ
ଏ ସହରଟା ମୋର ମୁଖସ୍ଥ
ମନେହୁଏ ଯେମିତି ଏକ ଶ୍ରେଷ୍ଠ ନମୁନା ଜଗତ୍ ।।

ମୁଁ କାହିଁକି ଦେଖୁଥିଲି ଏଫିଏଲ୍ ଟାୱାର ଉପରୁ
ପ୍ୟାରିସ ନଗରୀକୁ......
ଷ୍ଟେଟ ବିଲଡ଼ିଂଗ୍‌ର ୧୨୦ ମହଲା ଛାତରୁ
ଦୁଇ କାନ ଧରି ଏକଗୋଡ଼ିଆ ଛିଡ଼ା ହୋଇଥିବା
ଦୁଷ୍ଟ ସହରକୁ ? *
ମୁଁ କ'ଣ ଚକ୍ଷୁଦାନେ ଦୂରସ୍ଥ ହିଁ ଥିବ ?
ହେବ ନାହିଁ ଦ୍ରଷ୍ଟା ?
ଠାବ କରିବ ନାହିଁ ମୋର ସମଗ୍ର ସତ୍ତାକୁ
ଜନ୍ମ ଜନ୍ମାଂତରର ଧୂଆଁ ପଟଳ କାଟି !
ସବୁତ ଛପି ରହିଛି ପ୍ରସ୍ତକୁ ପ୍ରସ୍ତ, ଥାକକୁ ଥାକ
ଅବଚେତନର ଗହ୍ୱାସ୍ମୃତିରେ ।।

ମୋର ମଗ୍ନଚେତନାର ଭଗ୍ନଫଳକାରେ
ଲେଖା ଅଛି କେତେ ଜନ୍ମର କଥା,
ସେ ସବୁ ପଢ଼ିବ କିଏ ମୋ'ଛଡ଼ା
ଖୋଳାଖାଡ଼ି ବସ୍ତୁ ମୃତ ଚିହ୍ନ, ଗୋପନର ସଂକେତ ।

---

* ନ୍ୟୁୟର୍କର ଏଂପାୟାର ଷ୍ଟେଟ ବିଲଡିଂଗ ।

ସବୁଜ ରହିଛି ଲୁଚି ମହାସମୁଦ୍ରର ଚଟାଣରେ
ମୃତ ବିମାନର ଚେପ୍ଟା ଇଂଜିନ ପରି ।
ମୋତେ ହିଁ ସବୁ ଖୋଜି ବାହାର କରିବାକୁ ହେବ,
ଶିଁଉଳଖିଆ କଣ ଗ୍ରେବଷ୍ଟ ଭଳି ......
ମୋତେ ହିଁ ଯିବାକୁ ହେବ ମୋ'ର ସଂଧାନରେ
ଜଳ ସ୍ଥଳ ପାତାଳ ଓ ବ୍ୟୋମେ
ମୋ' ନିଜ ଭୂଇଁରୁ ।।          □ □ □

ଲଂଡନ
ଜୁଲଇ ୮, ୧୯୮୫

# ଛାୟା ପଟୁଆର

ଛାୟା ପଟୁଆର ଆସୁଛି
ଛାୟା ପଟୁଆର ।
ଛାଇମାନେ ଧାଡ଼ି ବାଂଧି ଚାଲିଛଂତି
ହାତମୁଠା ଟେକି ଧ୍ୱନି ଦେଉଛଂତି,
କିଂତୁ କିଛି ଶୁଭୁ ନାହିଁ
ସବୁ ନୀରବ ନିସ୍ତବ୍ଧ ।
ସେମାନେ ସେଇ ପାହାଡ଼ ନିକଟକୁ ଯିବେ
ହାତମୁଠା ତୋଳି ଧ୍ୱନି ଦେବେ
'ହଟିଯାଅ ହଟିଯାଅ ।'
କିଂତୁ ପାହାଡ଼ ଗିଳିଦେବ ସବୁ ଶବ୍ଦ...... ।
ସେମାନେ ବୋମା ଫୁଟାଇବେ
ପିସ୍ତଲ ଚଳାଇବେ ।
କିଂତୁ ପାହାଡ଼ ଗିଳିଦେବ ସବୁ ନିଆଁ ।
ଶ୍ରେଷ୍ଠ ଲାଲ କଅଁଳ ନିଆଁକୁ...... ।।

ସେ ପାହାଡ଼ଟା ଶକ୍ତ କଳା ମୁଗୁନି ପଥରର ।
କେତେ ହନୁ ଚୂଡ଼ା ହୋଇଛି ସେଠି
ଅତିକାୟ ଦୈତ୍ୟ ପରି
ଯାହାର ପ୍ରାଣଟା ତାର ଶ୍ରେଷ୍ଠ ଭଅଁରଟିଏ ହୋଇ
ଛପି ରହିଛି ନିବୁଜ ଫରୁଆ ଭିତରେ
ସାତ ତାଳ ପାଣି ତଳେ ପୋଖରୀ ମଝିରେ ।
ସେ ପାହାଡ଼ ମେଘମାନଂକୁ ଆଣି ନଚାଏ
ମୁର୍ଗୀମାନଂକୁ ଆକାଶରେ ଉଡ଼ାଏ
ଏବଂ ଇଗଲମାନଂକୁ ଶିକୁଳିରେ ବାଂଧି
ପଡିଆକୁ ଛାଡ଼ିଦିଏ ।।

ସେ ପାହାଡ଼ରୁ ଅଳଡ଼ା ଖସି
ଧସି ଯାଏ କେତେ ଗାଆଁ ଗଂଡା
ସହର ମଂଜିଲ ଶ୍ରେଷ୍ଠ-କେଂଦ୍ର ।

ତା' ଆଁରେ ଲୁଚିଛି କେତେ ଖପୁରି,
କେତେ ମେରୁହାଡ଼ ।।
ସେ ପାହାଡ଼ ହେଠି ଥିବ
ଏବଂ ତାଂକ ଦେହ ସବୁ ଛାଇଂକି
ତାର କଂକାଳର [illegible]ରେ ।
(ସେ ଭଅଁରଟା ନ ମରିବା ଯାଏଁ) □□□

ଲଂଡ଼ନ

ତା ୮ । ୫ । ୧୯୮୫



# ଯବନିକା

ଯବନିକା ପକାଅ ନାହିଁ ।
ଆଉ ଟିକଏ ଧରି ରଖ ।
ଅଭିନୟ ଆଉ ଟିକେ ବାକି—
ଶେଷ କେଇପଦ କଥା ।
ଯାହାର ନାମ ନୀରବତା ॥

ସେ କଥା ସ୍ୱରଲିପି  ଅନିଂଦ୍ୟ ଶବ୍ଦର
ଭାସିଆସେ ଶୁଭବାଣୀ ପରି
ନିରୁଜ୍ଜ୍ୱଳ ପୃଥିବୀର କୋଣୁ କୋଣୁ ।
ଫେରିଆସେ  ନିର୍ମଳତା, କୋମଳତା
ନୂଆପଣ ପରି
        ବୃକ୍ଷଲତା ଡାଳେ ଡାଳେ...... ॥

କ'ଣ ଛୁଟିଯିବ ?
ପରିଜଳ ସଭ୍ୟତାର ଋଣ !
ଦେବାଳିଆ ମୋ' ଉତ୍ତରାଧିକାର
        ନଷ୍ଟ ହୋଇଯାଉ ।
[illegible] ପୁରୁଷ ପାଇଁ ଯଦି ହୁଏ ଘର ।
[illegible]ଠା ତା' ମହାକାଳର ॥
କ'ଣ ଶେଷ        କ'ଣ ଆରଂଭ
ଦୁହେଁ ଏକାକାର ଶେଷ ଦୃଶ୍ୟ
ଅକ୍ଷିତୃଣାସ୍ତାରେ ଧାନ ବୁଣା
ପୁଷ୍ପମାସେ ଶସ୍ୟ କଟା ଆନଂଦ ଉତ୍ସବ
ଆଜି ମହାସ୍ମୃତିରେ ନିମଗ୍ନ
            ପୂର୍ବାପର ଭୁଲି ।
ପିତୃ-କୀଟ ମାତୃ ବିଂବ ଦୁହିଁର ସଗମେ
ଗର୍ଭଧାନ ଭ୍ରୂଣ,
        ପୁଣି ପ୍ରସବନ ଆଦ୍ୟ କିମ୍ବା ଯେତେ......
ଦଶମାସ ଗର୍ଭବାସ ଅଂତେ

ଧରି ଲିଂଗଦେହ        ଧରାବତରଣ
ଅଶ୍ଳେଷା ବା ପୁଷ୍ୟା ନକ୍ଷତ୍ରରେ
                    ମନେ ନାହିଁ ।
ବାଲ୍ୟ ଓ କୈଶୋର ଯୌବନ ଓ ଜରା
ଲଭିଇଲି କେତେ ପରିଣାମ        ଏ ଦେହରେ ।
ଏବଂ ଶେଷେ ଏ ମହାପ୍ରସ୍ଥାନ
ଘରବାହୁଡ଼ାର ଶୁଭକ୍ଷଣ ।
ମୋ' ପଛରେ ଦେଖେ ଛାୟା ପରି
            ଆସେ ଧର୍ମ-ଶ୍ୱାନ ।।

ପିଂଧିଛି ମୁଁ କୁଂଡ଼ଳ କବଚ
        ହୋଇଅଛି ସୋପାଧିକ ।
ଏ ଧରାର ପ୍ରତି କୋଣେ ଦେଖିଛି ମୁଁ
        ମଣିଷର ମଣିଷ ମୃଗୟା
ଯଂତ୍ରାରୂଢ଼ ଜୀବନର ପ୍ରତିଟି ଯଂତ୍ରଣା,
        ବିଡ଼ଂବଣା
ବଢ଼ାଏ ମୋ ଅଂଗୀକାର ଜୀବନର ପ୍ରତି,
ଶୁଝିବାକୁ ସମସ୍ତ ବକେୟା
ଦେଣା ଗତାୟୁ ଦିନର, କରିବାକୁ ଦାୟମୁକ୍ତ
        ଆଗାମୀ କାଳକୁ
ଏବଂ ରଖିବାକୁ ଅନାହତ ମଣିଷର ଅଭିମାନ,
ଉଚ୍ଚା ଖାନଦାନ ।
ଯେ କେଇଟା ଦିନ ଥିଲି ଏ ଦୁଷ୍ଟ ଗ୍ରହରେ
ଦିନେ ତ ପାଇନି ଶାଂତି ବୁଲି ବୁଲି ଏ ମୁଂଡ଼ୁ ସେ ମୁଂଡ ।।

ମୋତେ ଡାକ ନାହିଁ ।
ମୁଁ ସବୁ ଶବ୍ଦ ଓ ଦୃଶ୍ୟର ବାହାରେ ।
ଜାଣେ ତୁମେ ଯିବ ମୋ ସାଂଗରେ କିଛିବାଟ
ଭାଇ ବଂଧୁ ଦାରା ସୁତ, ସ୍ୱଜନ, କୁଟୁଂବ ।
ସେଇ ନିଂବ କୋଚିଲା ଗଛର ଛାୟା-ବୃତ୍ତ
        ସ୍ଥାନଟା ପର୍ଯ୍ୟଂତ ।

ତା'ପରେ ମୋ'.ପଥ ମୋ'ର ।
ଅନ୍ୟ କା'ର ନାହିଁ ଅଧିକାର
ମୋ' ଉପରେ ।
ମୁଁ ମୁକ୍ତ, ଶୂନ୍ୟସ୍ଥ
ସେଠି ସବୁ ଏକାକାର
ଶେଷ ଓ ଆରଂଭ ।
ଯେଉଁଠି ଅପେକ୍ଷା କରେ ମୋତେ,
ଅନ୍ୟ ଏକ କୋଠରୀରେ ଅନ୍ୟସମୟରେ
ନୂଆ ନଂଦୋତ୍ସବ···· ॥ □□□

ତା ୯ । ୯ । ୮୫
କଟକ-୧

# ନବାଗତା

ମୁଁ ଏକ ନିର୍ଜନ ଦ୍ୱୀପ
ମୁଁ ରହୁଛି ମୋ'ର ଅଂଧକାରେ
 ନିଜକୁ ଆବୋରି ।
ନିରର୍ଥ ନିଃଶବ୍ଦ ଘଣ୍ଟାଗୁଡ଼ିଏ
କାହାକୁ ଅପେକ୍ଷା କରେ
 ମୋ'ଛଡ଼ା ତ ଅନ୍ୟ କେହି ନାହିଁ !
ତୁମେ କି ସେ ନବାଗତା ଆସିଛ ସଙ୍ଖୋଳି ?
ମୁଁ କାହାକୁ ଲୋଡ଼େ ନାହିଁ
କିଂବା କେ ଆସିଲେ କହେ ନାହିଁ ଚାଲିଯାଅ ବୋଲି
କାରଣ ମୁଁ ଯିବି ଯିବି କରି
 ଯାଇପାରେ ନାହିଁ...... ।
ଫେରିଯାଏ ଫିକ୍କା ଦ୍ୱିପହର ।
ପ୍ରଖର ଶୂନ୍ୟତା ଘେରେ ମୋତେ,
 ଚାରିଆଡ଼ ଫାଂକା,
 ( ଏପରିକି ନାହିଁ ମରୀଚିକା । )
ମୋ'ର ଦମ୍ଭ କୀର୍ତ୍ତି ଓ କୃତି
ପଡ଼ିରହେ ପାଦ ତଳେ ଛିଂଡା ଗାଲିଚା ପରି
ତାର ସବୁ କାରୁକାର୍ଯ୍ୟ ଧୂଳିରେ ମିଳାଏ ।।

ମୋର ବାଲ୍ୟବଂଧୁମାନେ
ଗଲେଣି ତ କିଏ କାହିଁ ଚାଲି
ପ୍ରଲୁବ୍ଧ ବଂଦରେ ଅବା
 ଅଦୃଷ୍ଟ ସେପାରେ ।
ମୋ'ଜୀବନେ କେହି ତ ନାହାଂତି
 କେବଳ ମୋ' ନିଃସଂଗତା ଛଡ଼ା ।
ଅନାଗତା ଅଚିହ୍ନା ପୃଥିବୀ ମୋ' ସଂଗେ ସମ୍ପର୍କ ଯୋଡ଼େ ।
ମୋ' କାବ୍ୟର ବସ୍ତୁନିଷ୍ଠା କଲାଣି ସେ ସ୍ୱୀକାର
ମୁଁ ତାକୁ ଭଲପାଇ ବସିଲିଣି,
ତା'ର ସେଇ କୋମଳ ଶଦ୍ୟତା

ମୋ’ ଅପୂର୍ବ ଦେଶେ ଆସି ବାଢ଼େ ମନକଥା ।
କରେ ମୋତେ ଆବେଗ-ଚଂଚଳ ।
ମୁଁ ପାରେନା କହି ଆସ ଆସ କିଂବା
ଭୁଲିଯାଅ ବୋଲି.......
କାରଣ ମୁଁ ଯିବ ଯିବ କରି
ପାରେ ନାହିଁ ଯାଇ ।
ସେ କି ମୋ’ର ନବ ଜନ୍ମତିଥି
ଯେ ଦେବ ଦ୍ୱିଜନ୍ମ ମୋତେ
ତାଂକଦେଇ ସବୁ କ୍ଷମ କ୍ଷତ ॥ □□□

ଲଂଡନ
ତା ୧୧-୭-୧୯୮୫



# ସାପ୍ତାହିକୀ

ବୁଝିଜାଣି ସାରି ସପ୍ତାହନ୍ତା
ନିଃସଂଗବୋଧର ବିଲ ସିଡ଼ି ।
'ଆତ୍ମରତି, ସମ୍ମୋହନେ'
　　　　କଟିଗଲା ଦିନ ।
ଶୂନ୍ୟଉପବନରୁ ତୋଳି ଆଣି ଫୁଲ
ସଜାଇଲି ନିଜକୁ ମୁଁ,
ଆକାଶରେ ରଚିଲି ମହଲ
(ଯଦିଚ ତା'ଠାରୁ ବାସ୍ତବ ସଉଧ
　　　　କମ୍ ମଜବୁତ)
କାରଣ ବାସ୍ତବ ତ ପୁଂଜ ପୁଂଜ ବସ୍ତୁର ବୁଦ୍‌ବୁଦ ।
ଏବଂ ଜୀବନ ଏକ ଶୈବାଳି ହ୍ରଦ ।
ପଦେ ପଦେ ଶଂକା ।
ତେଣୁ କି ମୁଁ ବରିନେଲି ନେପଥ୍ୟର ଭୂମିକା !!

ମନେପଡ଼େ ଶୈଶବର ଚିହ୍ନ......ବେଦ୍
ଗୁପ୍ତ'ଛିନ୍ନ ସ୍ୱପ୍ନ......ସ୍ମୃତି..
　　　　ଖାଦ୍ୟ ଓ ସ୍ୱାଦ,
ଯେତେବେଳେ ଥିଲି ଅବିଭକ୍ତ,
ପରିଚ୍ଛିନ୍ନ ଯେପରି ସକାଳ ।
ଥିଲି କେଉଁ ଅତିକଥା * ରାଜ୍ୟର ପ୍ରବାସୀ ।
ମିଳିଯାଉଥିଲି କ୍ଷଣେ ସମସ୍ତ ଭିତର ।
ନଥିଲି ମୁଁ ଏପରି ବିଚ୍ଛିନ୍ନ ନ[illegible]ାରୁ,
　　　　ସମସ୍ତଙ୍କଠାରୁ
କେଉଁ ଅଭିଶାପେ, ସ୍ୱୟଂନିର୍ବାସିତ ॥

ଫେରିବାକୁ ହେବ ମୋତେ ଧାନେ
ଜୀବନର କଠିନ ଆହ୍ୱାନେ
ମାତୃ-ଉତ୍ସେ, ଆପଣା ଭୂଇଁରେ,
ନେପଥ୍ୟର ବିଳାସ ଛାଡ଼ି ନୈରାଜ୍ୟ ମଣ୍ଡଳେ ।

ମୁଁ ଆସେ ଫେରି
କେଉଁ ପରାବାସ୍ତବ * ପାଖରେ ପଡ଼ି ଥିଲି ବାନ୍ଧି
ଆସିଛି ମୁକୁଳି
ଅପହୃତ ବିମାନର ଚାଳକ ଯେପରି
ଘରେ ଫେରେ କିଛି ଦିନ ରହି ପଣେ,
ନିଜ ଛଡ଼ା ଅନ୍ୟ କ କାରଣେ ॥ □□□

ଲଂଡନ
ତା ୯।୭।୮୫

---

ଅତିକଥା = Myth । ପରାବାସ୍ତବ = ଅବଚେତନଆଶ୍ରିତ ସ୍ବପ୍ନ
ସୁର୍ରିଅଲିଜମ୍ ।

# ବଂଶବୃକ୍ଷ

ବଂଶବୃକ୍ଷ ଲମ୍ବ ଆସିଛି ତଳକୁ
ଓଲଟ ଗଛ ପରି ।
ମୋ' ପ୍ରପିତାମହଙ୍କ ଗୋସେଇଁବାପ—
ସେଇ ପର୍ଯ୍ୟନ୍ତହିଁ ପିଣ୍ଡ ପଡ଼େ ।
ତା'ପରେ ନାମ ଜାଣେନା ।
ସେମାନେ ତ ମିଶି ରହିଛନ୍ତି
ଏ ମାଟି ପବନରେ,
ଜାତକ ନାଁଟା ନ ମିଳୁ ।
ଏଇ ଝଙ୍କା ବରଗଛ ଡାଳରେ
ସେମାନେ ଝୁଲୁଥିଲେ ।
ଫିରିଙ୍ଗି ହୋ ହୋ କରି ହସୁଥିଲା ତଳେ
ତାଳି ମାରି ॥

ପିତୃପୁରୁଷଙ୍କ ବାଉଁଆ ଖଣ୍ଡାମାନ
ଏବେ ବି ଝୁଲୁଛି ଆମ ମଝିଘର କାନ୍ଥରେ
ଦଶହରା ଦିନ ମୁଁ ସେସବୁ ଖେଳାଏ
ବାଆଁ ହାତରେ;
ସଜ ଉଠିଲେ ।
ଆମ ବଂଶରେ ସମସ୍ତେ କୁଆଡେ ବାଉଁଆ ॥

ରାତିର ସପନକୁ ଦୁଇଫାଳ କରି
ଧାଇଁ ଆସନ୍ତି ଫିରିଙ୍ଗି, ପଲକୁ ପଲ ।
ଲମ୍ବା ଲମ୍ବା କଲି      ବାଘୁରି ବାଳର ଛାଁଟ,
ଲାଲ୍ ପଶମର ଜଙ୍ଗୀ କୁର୍ତ୍ତାରେ
ପିତଳ ବୋତାମ ଚକମକ୍ କରେ ।
ଫିରିଙ୍ଗି ଆସେ ଘୋଡ଼ାରେ ଚଢ଼ି
ଦାଣ୍ଡ ଫଟାଇ ।
ସେଇ ରାତିରେ ସେମାନେ ଗଛ କାଟିଲା ପରି
କାଟି ଦେଇଗଲେ ଘରକୁ ଘର ପାଇକ ଦେହ,

କେତେ ଫିରିଂଗି ମୁଣ୍ଡ ଛୁଟି
ଗଡ଼ିଲା ତଳେ
କଟା ପଇଡ଼ ପରି ।
କେତେ ଗୋରା ଲସ୍କର ଟଳି ପଡ଼ିଲେ
ଗଡଖାଇ ମୁଣ୍ଡରେ
ଯେମିତି ଶେଷ ସୁନିଆ ଭେଟି ॥

ଦୁର୍ବପୁରୁଷମାନେ ସାମ୍ନା ଯୁଦ୍ଧରେ ମଲେ,
କେତେ ଜଣଙ୍କୁ ଫିରିଂଗି ଧରି ନେଇ ଫାଶୀ ଦେଲା ।
ବଂଶର ରକ୍ତ କାଂଥରୁ ଶୁଖିଲା ନାହିଁ ।
କେତେ ରକ୍ତବୀଜ ଜନ୍ମ ନେଲେ
ଟୋପାଏ ଲହୁରୁ
ଅଜସ୍ର ଅଜସ୍ର ବାହୁ ମେଲିଛି ଆକାଶରେ ॥

ସେମାନଙ୍କ ବାଉଁଆ ଖଣ୍ଡା ଝୁଲେ
ଆମ ମଝିଘର କାଂଥରେ,
ମୋ'ର ବାଉଁଆ ଲେଖନୀ ହସିଉଠେ
ମୋ' ହାତରେ ।
ଆମ ବଂଶରେ କୁଆଡ଼େ ସମସ୍ତେ ବାଉଁଆ ଥିଲେ ॥ □□□

କଟକ-୧
ତା ୨୧-୯-। ୫



# ବିଜୟ ବାହୁଡ଼ା

ଏଇ ଯେ ବିଜୟ ସ୍ତମ୍ଭ ଆକାଶକୁ ଟେକିଅଛି ମଥା
ସୂର୍ଯ୍ୟ-ଅଶ୍ୱ ଖୁରା ବାଜି ଯା' ପତାକା ହେଉଛି ବିକ୍ଷତ ।
ଆଜି ସେଠି ଲାଗିଛି ଉତ୍ସବ ତୁମର ବାହୁଡ଼ା ଉପଲକ୍ଷେ
ତୁମ କଣ୍ଠେ ବୈଜୟନ୍ତୀମାଳା ଶିରେ ଶୋଭେ ବୈଦୁର୍ଯ୍ୟ ମୁକୁଟ
ହେଇ ଦେଖ, ସୁନାର ତୋରଣ ଧରି ସ୍ୱାଗତ-ଫଳକ
କପର ଝଟକେ ଡାଳି ଶତ ଶତ ସ୍ୱର୍ଣ୍ଣ ଦୀପପ୍ରଭା
ଫେରୁଅଛ ଆଜି ତୁମେ ଜୟ କରି ଆବିଶ୍ୱ ନିଖିଳ
ଘରଦ୍ୱାରେ ଶୁଣାଯାଏ ଆନନ୍ଦର ରୋଳ

ଶଙ୍ଖ ବାଦ୍ୟ ସ୍ୱନ ।

ଭାଟମାନେ ଗାଉଛନ୍ତି ସ୍ତୁତି, ନର୍ତ୍ତକୀଗଣ କରନ୍ତି ଅପେକ୍ଷା
ହାତେ ଧରି ବନ୍ଦାପନା ଥାଳି, ଦୁବ ଓ ଅକ୍ଷତ ।
ବ୍ରାହ୍ମଣେ ପଢ଼ନ୍ତି ବେଦ ଅନୁଷ୍ଟୁପ ଛନ୍ଦେ ।
କିନ୍ତୁ ହାୟ ତୁମେ କି ଦେଖୁନ ପଥପ୍ରାନ୍ତେ ଅମଙ୍ଗଳମାନ
ଅଶୁଭ ଶକୁନ, ଘନ ଘନ ବାମ

ଚକ୍ଷୁର ସ୍ଫୁରଣ,

ଠିକ୍ ତୁମ ଶ୍ୱେତ ହସ୍ତୀ କଲବେଳେ ଗୃମର ବ୍ୟଜନ
ପହଞ୍ଚିବା ବେଳେ ତୁମେ ତୋରଣର ତଳେ,
ଦିଗ୍‌ବିଜୟୀ ! ସ୍ୱର୍ଣ୍ଣ କୁମ୍ଭ ଖସିପଡ଼ି ଚୂରିଦେବ ଶିର ।
ବିଜୟ ବାହୁଡ଼ା ହେବ ମହାଯାତ୍ରା, ମହୋଲ୍ଲାସ
ଭରିଦେବ କିଛି ଦୂରେ ଆସୁଥିବା ଭ୍ରାତାଙ୍କ ଶିବିର । □□□

କଟକ-୧
ତା ୨୯-୯-୮୫

# ସୂଚନା

ଏହି ଗୀତଗୁଚ୍ଛରେ ସନ୍ନିବେଷ୍ଟ ଗୀତିକାଗୁଡ଼ିକ ସଙ୍ଗୀତପ୍ରଧାନ । ସେଗୁଡ଼ିକର ରଚନାକାଳ ୧୯୮୦ ମସିହା ଅକ୍ଟୋବର-ନଭେମ୍ବର ମାସ । ମୁଁ ସେତେବେଳେ ଏକ ଅପରେସନ ହେବ ବୋଲି କଟକ ବଡ଼ ଡାକ୍ତରଖାନା ନର୍ସିଂ ହୋମ୍‌ରେ ଥାଏ । ଏହି ଗୀତିକାଗୁଡ଼ିକର ବିଷୟବସ୍ତୁ ବିଭିନ୍ନ ଧରଣର ଯଥା, ପ୍ରେମ, ଆଧିଭୌତିକ ଚେତନା, ଜୀବନ ସଂଘର୍ଷ, ବ୍ୟଂଗ, ଦେଶାତ୍ମବୋଧ ଓ ଜଗନ୍ନାଥ ଜଣାଣ । ଏ ଗୀତମାଳାର କେତୋଟି ଗୀତ ଆକାଶବାଣୀ କଟକ କେନ୍ଦ୍ରରୁ ବିଭିନ୍ନ ସମୟରେ କେତେକ ଗାୟକ ଗାୟିକାଙ୍କ କଣ୍ଠରେ ପରିବେଷିତ ହୋଇ ଆଦୃତ ହୋଇଥିଲା ।

ଏଠାରେ ଟିକିଏ ସୂଚନା ଦିଆଯାଇପାରେ ଯେ ଏହି ଗୀତିକାଗୁଡ଼ିକରେ ଆଧୁନିକ ଅବବୋଧ ପ୍ରତିଫଳିତ । ଏପରିକି କେତେକ ଜଗନ୍ନାଥ ଗୀତିକାରେ ମଧ୍ୟ । ତେଣୁ ଗଚ୍ଛିତ ଶବ୍ଦ ଗୁଡ଼ିକ ବହୁ ସ୍ଥଳରେ ଦୈନନ୍ଦିନ ଜୀବନର ଚଳନ୍ତି ଶବ୍ଦ ବ୍ୟବହାର କରାଯାଇଛି । ସାଧାରଣ ପାଠକ ବା ଶ୍ରୋତୃମଣ୍ଡଳୀ ହୁଏତ ଏଥିରେ ଅଭ୍ୟସ୍ତ ନ ଥାଇ ପାରନ୍ତି । ମାତ୍ର ସେମାନଙ୍କର ପ୍ରସ୍ଫୁଟିତ ଉଦ୍ଦୀପନା ବା ରସବୋଧ କ୍ଷୁର୍ଣ୍ଣ ହେବ ବୋଲି ମୁଁ ଭାବୁ ନାହିଁ । ପାଶ୍ଚାତ୍ୟରେ ଜାଜ୍ ଏହାର ପ୍ରମାଣ । ମୁଁ ଅବଶ୍ୟ ଡିସ୍କୋ ବା ପପ୍ କଥା ଉଠାଉ ନାହିଁ । କାରଣ ସେ ସବୁ ଭିନ୍ନ ଧରଣର ଓ ଭିନ୍ନ ଧର୍ମର । ସେମାନେ ବଡ଼ ବହିର୍ମୁଖୀ, ସେମାନଙ୍କର ଗତି ଓ ପ୍ରକୃତି ମନୋରଞ୍ଜନ ମୁଖାପେକ୍ଷୀ । ବରଂ ମନନଶୀଳତା ସେମାନଙ୍କଠାରେ ଦୁର୍ଲଭ ।

## ଜଗନ୍ନାଥେ

ମୁଁ ଜଗନ୍ନାଥ ଜଣାଣ କାହିଁକି ଲେଖିଲି ଏ ପ୍ରଶ୍ନ ଉଠିବା ସ୍ୱାଭାବିକ । ଜଗନ୍ନାଥ ଆମ ଦେଶର କୋଟି କୋଟି ଜନତାର ପ୍ରିୟ ଦେବତା । ବିଦେଶରେ ମଧ୍ୟ ସେ ବେଶ୍ ଆଦୃତ ହେଉଛନ୍ତି । ଆମ ଦେଶର କଳା, ସାହିତ୍ୟ ଓ ସଂସ୍କୃତି ସହିତ ସେ ନିବିଡ଼ ଭାବରେ ଜଡ଼ିତ । ତେଣୁ ଜଗନ୍ନାଥଙ୍କୁ ଭୁଲିଯିବା ଅର୍ଥ ଆମ ସଂସ୍କୃତିର ମୂଳ ଉତ୍ସକୁ ଓ ଗଣମାନସକୁ ଭୁଲିଯିବା । ମୋ ଲିଖିତ ଜଗନ୍ନାଥ ଗୀତିକାଗୁଡ଼ିକ ଜଣାଣ ହେଲେ ମଧ୍ୟ ଐତିହାସିକ ଅବବୋଧ ଓ ସାମାଜିକ ପ୍ରେରଣାରୁ ବିଚ୍ଛିନ୍ନ ନୁହନ୍ତି ।



କବିତା-୧୯୮୫

ଜଗନ୍ନାଥ ଏପରି ଏକ ଅନୁଷ୍ଠାନ ଯେଉଁଠାରେ ପ୍ରାଗୈତିହାସିକ ସଙ୍ଗେ ଇତିହାସର, ସୁଦୂର ଅଜ୍ଞାତ ସଙ୍ଗେ ବର୍ତ୍ତମାନର ମିଳନ ଓ ସମନ୍ୱୟ ଘଟିଛି । ଯେଉଁ ସମୟରେ ଏ ଗୀତିକାଗୁଡ଼ିକ ରଚିତ ତାର ତିନି ଚାରିମାସ ପୂର୍ବରୁ ଅର୍ଥାତ୍ ୧୯୮୦ ମସିହା ଗ୍ରୀଷ୍ମଋତୁରେ ମୁଁ ଭାରତ ସରକାରଙ୍କ ଆନୁକୂଲ୍ୟରେ ଏବଂ ସମ୍ପୃକ୍ତ ଅତିଥି ରାଷ୍ଟ୍ରଙ୍କ ଆମନ୍ତ୍ରଣକ୍ରମେ ସୋଭିଏତ ରୁଷ, ପୋଲାଣ୍ଡ, ଚେକୋସ୍ଲୋଭାକିଆ, ଇଂଲଣ୍ଡ ଓ ପ୍ୟାରିସ ପ୍ରଭୃତିରେ ବକ୍ତୃତା-ଭ୍ରମଣରେ ପ୍ରାୟ ତିନି ମାସ କଟାଇ ଫେରିଥାଏ । ସୋଭିଏତ ରୁଷରେ ପୁଷ୍କିନ ସେମିନାରରେ ଭାରତର ପ୍ରତିନିଧିତ୍ୱ କରିବା ଅବସରରେ ମସ୍କୋ ବିଶ୍ୱବିଦ୍ୟାଳୟ ପରିସରରେ ଭାରତ ତଥା ଓଡ଼ିଶାର ପଟ୍ଟଚିତ୍ର ଓ ପୋଥିଚିତ୍ରର ଏକ ପ୍ରଦର୍ଶନୀ କରିଥିଲି । ପ୍ରସିଦ୍ଧ ଭାରତବିଦ୍ୟାବିତ୍ ମ୍ୟାଡ଼ାମ ଗୁସେଭା ଏବଂ ତାଙ୍କ ସ୍ୱାମୀ ଏକାଡେମିସିଆନ୍ ଡକ୍ଟର ଗୁସେଭ ବଡ଼ ଆଗ୍ରହର ସହିତ ଏହାର ଆୟୋଜନ କରିଥିଲେ । ବହୁ ପ୍ରଫେସର, ଅଧ୍ୟାପକ, ଇଂଡୋଲୋଜିଷ୍ଟ ଏବଂ ଛାତ୍ରଛାତ୍ରୀ ଏଥିରେ ପ୍ରଦର୍ଶିତ ଜଗନ୍ନାଥ ପଟ୍ଟଚିତ୍ର ଦେଖି ମୁଗ୍ଧ ହୋଇଥିଲେ । ପୋଲାଣ୍ଡ, ଚେକୋ-ସ୍ଲୋଭାକିଆ, ଲଣ୍ଡନ ଏବଂ ପ୍ୟାରିସ୍‌ରେ ମଧ୍ୟ ଅନୁରୂପ ପ୍ରଦର୍ଶନୀମାନ କରାଯାଇଥିଲା । ପ୍ରଦର୍ଶିତ ପଟ୍ଟଚିତ୍ରଗୁଡ଼ିକ ମୁଖ୍ୟତ ଜଗନ୍ନାଥଙ୍କ ଉପରେ ଆଧାରିତ ଥିଲା । ପ୍ରତି ପ୍ରଦର୍ଶନୀରେ ଭାଷଣ ଦେଲାବେଳେ ଜଗନ୍ନାଥଙ୍କ ତାତ୍ପର୍ଯ୍ୟ ଓ ଐତିହ୍ୟ ଯାହା ପ୍ରାକ୍ ବୈଦିକ କାଳରୁ ଅଦ୍ୟାବଧି ବିସ୍ତୃତ, ବୁଝାଇବାକୁ ପଡ଼ୁଥିଲା । ବିଦଗ୍ଧ ଦର୍ଶକମଣ୍ଡଳୀ ଜଗନ୍ନାଥଙ୍କ ସଂପର୍କରେ ଆହୁରି ଅଧିକ ଜାଣିବା ପାଇଁ ସବୁବେଳେ ଆଗ୍ରହ ପ୍ରକାଶ କରୁଥିଲେ ।

ଏହା ପରେ ୧୯୮୨ ମସିହାରେ ଲଣ୍ଡନ ବିଶ୍ୱବିଦ୍ୟାଳୟଙ୍କ ସାଗ୍ରହ ଆମନ୍ତ୍ରଣ କ୍ରମେ ମୁଁ ସ୍କୁଲ ଅଫ୍ ଓରିଏଣ୍ଟାଲ ଏଣ୍ଡ ଆଫ୍ରିକାନ ଷ୍ଟାଡିଜ, ଲଣ୍ଡନ, ପରିସର ମଧ୍ୟରେ ପଟ୍ଟଚିତ୍ର ଓ ପୋଥି ଚିତ୍ରର ଏକ ପ୍ରଦର୍ଶନୀ ଅନୁଷ୍ଠିତ କରିଥିଲି । ଏଥିରେ ଜଗନ୍ନାଥ-ଭିତ୍ତିକ ବହୁ ଚିତ୍ର ସ୍ଥାନ ପାଇଥିଲା । ଉଦ୍‌ଘାଟନ ଉତ୍ସବରେ ବହୁ ବୁଦ୍ଧିଜୀବୀ, ଲେଖକ, କଳାକାର, ଚିତ୍ରୀ, ସାମ୍ବାଦିକ, ବିଶ୍ୱବିଦ୍ୟାଳୟ ଅଧ୍ୟାପକ, ଅଧ୍ୟାପିକା, ଛାତ୍ରଛାତ୍ରୀ ଯୋଗ ଦେଇଥିଲେ ଏବଂ ମୋ'ର ପ୍ରାରମ୍ଭିକ ଭାଷଣ ପରେ ଜଗନ୍ନାଥ ଓ ଓଡ଼ିଶାର କଳା-ସଂସ୍କୃତି ସମ୍ବନ୍ଧରେ ବହୁ ପ୍ରଶ୍ନ ପଚାରି ଅଧିକ ଜାଣିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଏ ପ୍ରଦର୍ଶନୀ ଓ ଭାଷଣ କାର୍ଯ୍ୟକ୍ରମ ପ୍ରାୟ ତିନିମାସ ଧରି ଚାଲିଥିଲା । ମୋ ସ୍ତ୍ରୀ ମଧ୍ୟ ଉଦ୍‌ଘାଟନ ସଭା ଓ ତତ୍‌ସଂକ୍ରାନ୍ତ ବନ୍ଧୁ ମିଳନରେ ଯୋଗ ଦେଇଥିଲେ । ଏହାର ଅବ୍ୟବହିତ ପରେ ପୂର୍ବ ଲଣ୍ଡନର ଇଲ୍‌ଫୋର୍ଡ଼ ଲାଇବ୍ରେରୀରେ ସେମାନଙ୍କ ଅନୁରୋଧରେ ଏ ପ୍ରଦର୍ଶନୀ ଦୁଇମାସ ଚାଲିଥିଲା । ମୁଁ ଓ ମୋ' ସ୍ତ୍ରୀ ଭାରତ ଚାଲି ଆସିବାରୁ ଲଣ୍ଡନରେ ମୋ' ବଡ଼ଝିଅ ମଞ୍ଜୁଶ୍ରୀ ଏବଂ କାନାଡାରେ ଥିବା ମୋ' ସାନପୁଅ ଉଦୟନ ଏହାର ଦେଖାଶୁଣା କରୁଥିଲେ । ଗତବର୍ଷ ମଧ୍ୟ (୧୯୮୫) ମୁଁ

ଓ ମୋର ସ୍ତ୍ରୀ ଲଂଡନରେ ସ୍ବଳ୍ପମାସ ରହଣି ଭିତରେ ଏ ଦିଗରେ କିଛି କାର୍ଯ୍ୟ କରିବାକୁ ଅବସର ମିଳିଥିଲା ।

ମୁଁ ବହୁବାର ଆମେରିକା ଓ ଅନ୍ୟାନ୍ୟ ଏସୀୟ ଓ ୟୁରୋପୀୟ ଦେଶ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯାଇଥିଲେ ମଧ୍ୟ ଏଭଳି ପ୍ରଦର୍ଶନୀ କରିବାର ସୁଯୋଗ ମିଳି ନାହିଁ । ଉଦାହରଣ ସ୍ୱରୂପ ଆମେରିକାରେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ ସେମିନାର୍ ଆମେରିକା ଷ୍ଟଡି, ମିସନ ଇଂଟରନାସନାଲ କାର୍ଯ୍ୟକ୍ରମ, ଏବଂ ଅଷ୍ଟ୍ରେଲିଆ, ନ୍ୟୁଜିଲ୍ୟାଂଡ, ବାଂଲାଦେଶ ଏବଂ ଥାଇଲ୍ୟାଂଡରେ ଅନୁଷ୍ଠିତ ସେମିନାରମାନ ଏବଂ ଇଟାଲୀ, ଜର୍ମାନୀ ଫ୍ରାନ୍ସ, ସୁଇଜରଲ୍ୟାଂଡ୍ ଇଜିପ୍ଟ, ସିଂହଳ, ଜାପାନ ପ୍ରଭୃତିରେ ଅନୁଷ୍ଠିତ ସାହିତ୍ୟ ସମ୍ମିଳନୀମାନଂକରେ ଅଂଶ ଗ୍ରହଣ ପ୍ରଭୃତି ଉଲ୍ଲେଖ କରିଯାଇ ପାରେ । ମାତ୍ର ଏ ସବୁ କାର୍ଯ୍ୟକ୍ରମରେ କଳା ଓ ସାହିତ୍ୟ ଉପରେ ଭାଷଣ ଦେବାହିଁ ମୂଳ ବିଷୟ ଥିଲା । ତେଣୁ ଅନ୍ୟ କିଛି କାର୍ଯ୍ୟପାଇଁ ଅବସର ବଡ଼ ସୀମିତ ଥିଲା । ଏ ବର୍ଷ ଆମେରିକାରେ ଥିବାବେଳେ ଏକ ପ୍ରଦର୍ଶନୀ କରିବାର ଇଚ୍ଛା ଥିଲା । ମୋ' ସାନ ଝିଅ ଚନ୍ଦା (ଯେ କି ସିନ୍‌ସିନାଟି ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରୁଛି) ମଧ୍ୟ ଲଗାଇଥିଲା । ମାତ୍ର ହାତରେ ଏତେ ବେଶୀ ସମୟ ନ ଥିବାରୁ ଏଥିରୁ ନିବୃତ୍ତ ହେଲୁଁ ।

ଏଠାରେ କହିଲେ ବାହୁଲ୍ୟ ହେବ ନାହିଁ ଯେ ଏ ସବୁ କାମ ବଡ଼ ବ୍ୟୟସାପେକ୍ଷ । ଏଥିପାଇଁ ପ୍ରଚୁର ସଂବଳ ଓ ଲୋକବଳ ଲୋଡ଼ା ଏବଂ ସ୍ୱତଂତ୍ର ବ୍ୟବସ୍ଥା ହେବା ଦରକାର । କାରଣ ଏହା ସହିତ ଜାତିର ପରିଆସ୍ତି ଓ ଭାବମୂର୍ତ୍ତି ଜଡ଼ିତ । ତଥାପି ଏକକ ଉଦ୍ୟମରେ ଯେତିକି ସମ୍ଭବ କରିଯାଉଛି ।

ଏହା କହିବାର ତାତ୍ପର୍ଯ୍ୟ ହେଉଛି ଜଗନ୍ନାଥଂକର ଏକ ସାର୍ବଜନୀନ ଆବେଦନ ଅଛି ଯାହା ଦେଶ ଜାତି ଧର୍ମ ନିର୍ବିଶେଷରେ ସମସ୍ତଂକୁ ଆକର୍ଷଣ କରିଥାଏ । ତାଂକୁ ଯଥାର୍ଥ ବ୍ୟାଖ୍ୟା ଦେଇ ଆଧୁନିକ ଜଗତରେ ପ୍ରତିଷ୍ଠା କରିଯାଇ ପାରେ । ବିଶ୍ୱର ମଣିଷ ନିକଟରେ ଜଗନ୍ନାଥ ବହୁ ପ୍ରାଗୈତିହାସିକ ଓ ଐତିହାସିକ ଧାରା ଉପଧାରା, ଧର୍ମ-ଧାରଣାର ପବିତ୍ର ସଙ୍ଗମସ୍ଥଳୀ ଏବଂ ମହାସ୍ରୋତ ମଧ୍ୟ ଯେଉଁଠି ଆଦିଅଷ୍ଟ୍ରେଲୀୟ ଜନ ସଙ୍ଗେ ଦ୍ରାବିଡ଼, ଆର୍ଯ୍ୟ, ଗ୍ରୀକ୍, ଯବନ ଓ ଇଂରେଜ ଆଦି ଜନଂକର ମିଳନ ଓ ସମନ୍ୱୟ ଘଟିଛି । ଏପରିକି ଯୀଶୁ ଖ୍ରୀଷ୍ଟ ମଧ୍ୟ ତାଂକ ପ୍ରଭାବରୁ ବାଦ୍ ଯାଇ ନାହାଂନ୍ତି ।*

---

* ଅନେକ ପାଶ୍ଚାତ୍ୟ ଗବେଷକଂକ ମତରେ ଯୀଶୁଖ୍ରୀଷ୍ଟ ତାଂକ ଆଦ୍ୟ ଯୌବନର କେତେକ ବର୍ଷ ଜଗନ୍ନାଥ ପୁରୀରେ ଅତିବାହିତ କରିଥିଲେ । ସେତେବେଳେ ଏହା ଏକ ବୌଦ୍ଧ ପୀଠ ଥିଲା ।

ଦ୍ୱିତୀୟ ଭାଗରେ ଗୀତିଗୁଚ୍ଛ ଅଂତର୍ଗତ ଜଗନ୍ନାଥ ଗୀତିକାଗୁଡ଼ିକରେ ଓଡ଼ିଶାର ଜନମାନସ ପ୍ରତିଫଳିତ । ଓଡ଼ିଶାର ମଣିଷ ପକ୍ଷରେ ଜଗନ୍ନାଥ ସାମୂହିକ ସ୍ମୃତିର **(Collective Memory)** ଧାରକ ଓ ବାହକ । ବ୍ୟକ୍ତିର ମଗ୍ନଚୈତନ୍ୟରେ ଗଣମାନସ ଅଂତଶୀଳ ରହିଥାଏ । ଏହାକୁ ବିସ୍ମୃତ ହେବା ଅସଂଭବ । ମଣିଷର ଅବଚେତନ ମନର କେଉଁ ସ୍ତରରେ, କେଉଁ କୋଣରେ ଅତୀତର ସ୍ମୃତି, ଧାରଣା ଓ ପ୍ରତୀକପୁଂଜ ଲୁଚି ରହିଛି, ତାହା କେହି ସଠିକ ଜାଣେ ନାହିଁ । ମାତ୍ର ତାହା ଯେତେବେଳେ ନାନା ସ୍ମୃତି ଓ ସଂସ୍କାର ମଧ୍ୟ ଦେଇ କଳା ବା କାବ୍ୟରେ ପ୍ରକାଶ ପାଏ ସେତେବେଳେ ଆମେ ତାର ସନ୍ଧାନ ପାଉଁ । ସେହି ଦୃଷ୍ଟିରୁ ଜଗନ୍ନାଥଂକୁ ଗଣମାନସର ପ୍ରତିରୂପ ଭାବେ ଚିହ୍ନିତ କରି ହେବ । ଅନ୍ୟ କୌଣସି ଅନୁଷ୍ଠାନରେ ଏହା ଏପରି ବ୍ୟାପକ ନୁହେଁ ।

ଶେଷରେ ଏ ଗୀତିକାଗୁଡ଼ିକ ଜନସାଧାରଣଂକ ନିକଟରେ ପହଂଚୁ ଏହା ମୋର ଆଂତରିକ କାମନା ।

ସଚ୍ଚିଦାନଂଦ ରାଉତରାୟ

ମିସନ ରୋଡ୍
କଟକ-୧
ତା ୨୦-୧୦-୮୫

# ପ୍ରେମ ଗୀତିକା

୧

ମେଘ ଘର ତାର ସଖି ଆଖିପତା
ଚଲକୁ ଆସୁଛ ନଇଁ,
ଛୁଇଁଦେଲେ ସତେ ତରଳ ପଡ଼ିବ
ଗୋଟିଏ ଜମାଟ ନଈ ।
କହିଲେ କିଛୁ ତ ଓଲଟା ପବନେ
କଥା ମୋ' ଆସଇ ଫେରି,
କିଛୁ ନ କହିବା ତାହାଠାରୁ ଭଲ
ସ୍ତବ୍ଧି ରହେ ସେହିପରି ।
ମୁଁ ଯାହା କହୁଂଛି
ସେ'ତ ଜାଣିପାରେ,
ସେ ଯାହା କହୁଂଛି
ଅଜଣା ତ ମୋତେ ନାହିଁ ॥ □ □

୨

କଥା ସରିଗଲା ହେଲାନି ଯା' କୁହା
ହେଉ:ତାହା ଉପକଥା,
ସ୍ମୃତିର ରାଇଜେ ବନ୍ଧୁ ଲୁଚି ଲୁଚି
କାଲେ କାଲେ ଗୋପନେ ତା' ।
ସେ କଥାରେ ଅଛି ଜଣେ ମଣିଷର
ହୃଦୟର ଆକୁଳତା,
ସେ ନୁହେଁ କାହାର ସେ'ତ ସବୁରର,
ସେ ଚିର ପୁରାଣ ଗାଥା ।
ସମୟର ଛୁଆଁ ଲାଗି ପାଲଟେ ତା'
କୁଆଁ ଭରା ପ୍ରତିଧ୍ୱନି—
ମଂଜି ଦେବାକୁ ପ୍ରତି ସକାଳର ମଥା ।
ଲୁଚାଇ ତାହାକୁ ରଖିବ କିପରି
ହୃଦୟର ଝିପାଖାତା ? □ □

୩

କଳା ଆଖି ଭ୍ରୁଇ ତାର କୁନ୍ତଳ ମେଘ
କେବେ ବରଷେ ପାଣି
ରଚି ଶିଉଳି ପଥ,
କେବେ ବଜ୍ର ହାଣି
ବାନ୍ଧ ଅଗ୍ନି ରଥ
ସୃଜେ ଝଡ଼ର ବେଗ ।
ମନେ ହୁଏ ସେ ତା'ର ନିଜ ସଂଲାପ,
ଚଢ଼ା ଆଉ ଉତ୍ତରର
ଏକ ଆଲାପ;
ଏକ ପୁଣି ବନ୍ଧୁ ଆବେଗ ॥ □ □

୪

ଆଗୁଆ ଦିନର ଠିକଣା
ମୋତେ ଦେଲା ଘୋର ଯଂତ୍ରଣା ।
କିପରି ଜାଣିବି କିଏ ସେ କେଉଁଠି
ମୋ' ପାଇଁ କରେ ମାଜଣା ।
କେତେ ଦିନ ପରି ଘଟଣା !
ଆଜି କଥା ପୁଣି କାଲି ର ଅଂତର,
କିପରି କଳିବି ମୁହିଁ ମହାକାଳ,
କିପରି ଜାଣିବି କିଏ ସେ କାହିଁକି
ମୋତେ ଖୋଜିବୁଲେ ଏଠି ଓ ସବୁଠି,
ଯାହିଁ ଯାଏ ସିଏ ଦେଖେ ସେଠାରୁ ମୁଁ
ସେକ୍ଷଣି ଯାଇଛି ଉଭେଇ,
ହୋଇଅଛି ଚିର ଅଚିହ୍ନା ॥

ଏ ବ୍ରହ୍ମରେ ଅବା ବ୍ରହ୍ମାଂଡରେ କାହିଁ
କେଉଁ କାଲାଂତର ଶେଷେ ତାକୁ ନେଇ
ମୁଁ ଗଢ଼ିବି କାବ୍ୟ-ପ୍ରତିମା,
ସବୁ ରହିଯାଏ ଅଜଣା ।
କିପରି ଜାଣିବି ମହାକାଳର ସେ ଯୋଜନା ? □ □

୫

କଟି ତାର ଯଦି ଏକ ଉପନଦୀ
ଶସ୍ୟ-ଶିଗ୍ରବଣ ସଂଜେ ଯିବକ ଫିଟି !
ନୀଳାଂଗୀ ଜଳର ଧାର
ନ ହୋଇ ସ୍ରୋତ ଚଂଚଳ
ଆସିବ ସିକତା-ଶେଯେ
ନଜେ ସେ ଲେଟି ।

ଆଖିପତା ଛଳଛଳ
ଅବା ମଥୂର ମଂଗଳ !
ଫେରବାର ଅଳ କରେ
ବିଦାୟର ବେଳା ଯେବେ ଆସଇ ଘୋଟି ।
ମୁଁ ତାକୁ କେଉଁ ବଂଧନେ
ବାଂଧିବ ନଜେ ନ ଜାଣେ,
ନଜର ବଂଧନ ସେଷ୍ଟିଯେ
ନଜ ମୁକ୍ତ,
ନଜକୁ ଗୋପନେ ରଖେ
କ୍ଷଣେ ପ୍ରକଟି ।

□ □

୬

ଅଶ୍ରୁ !
ଅଶ୍ରୁ ଆଉ ହୋଇ ଅଶ୍ରୁଜଳ
ଥାଉ ନିଜ ଶଯ୍ୟାରେ ଅଚଳ ।
ନୋହିଲେ ନ ହେଉ ପଛେ ତାହା ମୁକ୍ତା-ଫଳ ।
ଗଭୀର ହୃଦୟ ରେଖା
ଯେଉଁଥିରେ ଅଛି ଲେଖା
(ଯହିଁରେ କେବଳ)
ନୋହୁ ପଛେ ତାହା ସ୍ୱାତୀ-ଜଳ
ତାହା ମୋ'ର ଆଖିର ନିର୍ଝର ।।

□ □

୭

ସଉରଭଲୋଭୀ ଭ୍ରମର ହେବ ମୁଁ
ପଦ୍ମ ପାଖକୁ ଯିବନି ।
ମୋତେ ମୁଁ କାହ୍ନାର ସୁନା ଫରୁଆରେ
ବାନ୍ଧି ଦେବାକୁ ଦେବନି ।
ଗୁହିଁବାରେ କିଛି ନାହିଁ ଅପଯଶ,
ପାଇବାରେ ଯିନା ଯେତେ ତାପ କ୍ଳେଶ,
ଚନ୍ଦ୍ର-କଣ୍ଠର ପ୍ରୀତି ପରିରୂପ
(ମୁଁ କି) ଲକ୍ଷେ ଯୋଜନୁ ଦେଖିବି !
ହେବ ଉଚ୍ଛ୍ୱାସ, ସେ ମୋ'ର ଉତ୍ସ,
ରୂପ ରସ କିଛି ନେବନି ।
ନେବ ନାହିଁ ତାର ଶିଶିରର ଶୀତ
କୃଷ୍ଣ କୋମଳ କବରୀ ଗୁଚ୍ଛୁଟି,
ନେବ ନାହିଁ କଥା ନେବ ନାହିଁ ବ୍ୟଥା,
ବଦଳରେ କିଛି ଦେବନି ।
ଯଦି କିଛି ଥାଏ ଖାଲି ଗୁହିଁବାରେ,
ସେତିକି ମୁଁ ନେବ,
ଆଉ ବେଶୀ କିଛି ନେବନି ।।

୮

ତପୋଭଂଗ ପରେ ଆଶା କରିଥିଲି
ଭେଟିବି ମୁଁ ଜଣେ ନଟୀ ।
ଗୁହିଁନି ମୁହିଁକୁ ଦେଖିଛି କେବଳ
ସ୍ୱର୍ଣ୍ଣମେଖଳ କଟି ।
ଲୋଡ଼ିଥିଲି ମୁଁ ତ ସ୍ୱର୍ଗ ସଂପଦ
ସସାଗରା ଧରା, ଇନ୍ଦ୍ରପଦ ।
ତମେ କିଆଁ ଆସି ଛଡ଼ାଇ ନେଲ ମୋ'
ଶିର ସେ ମୁକୁଟଟି !
ବଦଳରେ ଦେଲ ଏକ ବନମାଳା,

ସୁରଭି ସ୍ପର୍ଶେ ବିଦ୍ୟୁତ ଜ୍ୱାଳା,
ମୁଁ ଭାବିଲି ତୁମେ ବନଶ୍ରୀ ଅବା
ଫାଲଗୁନେ ଅଛ ଫୁଟି !
ହରିଲ ଚିତ୍ତେ ପୁଲକ ନୃତ୍ୟେ
ହରିଲ ସକଳ ପୁଣ୍ୟ କୃତ୍ୟେ,
ବଦଳରେ ଦେଲି କେବଳ କଳାର
ଅପୂର୍ବ ପରିପାଟି ।
ତୁମେ ନୁହେଁ ତୁମ ଶିଳ୍ପହିଁ ସତ,
ଭୁଲିଇଛୁ ପଥ, କରିଛୁ ଦୁଃଖ,
ଭାବେ ଯା' ପାଇଛୁ ତାହା ମୋ' ପ୍ରାପ୍ୟ,
(ବାକି ସବୁ କାଛୁ)
ଷ୍ଟେଜବାଜି ଗୋଟି ଗୋଟି ।।

□ □

୯

କିଏ କହିଗଲା ବଡ଼ ପାହାଂତାରେ
(କାନେ କାନେ ମୋ'ର)
ସପନ ମଧୁର କଥା !
ଅଧେ ନିଦ ଅଧେ ଜାଗରଣେ କିଏ
ଖ୍ରେଞ୍ଚିଦେଲା ଦେହ-ଲତା ।
ଛଅ ଅକ୍ଷରେ କହିଗଲା ନାମ
ବୁଝିନା ତା'ମାନେ ମନେରଖେ କମ୍ ।
ସେ ପ୍ରଜ୍ଞାପାରମିତା ।
ମୁଁ ଜାଣିଛୁ ତାକୁ ଚର୍ଯା ଗୀତରୁ ,
ମୁଁ ଜାଣିଛୁ ତାକୁ ଅଜପା ପଦରୁ,
ମୁଁ ଭେଟିଛୁ ତା'କୁ ମଣିପଦ୍ମରେ,
(ତଥାପି)
ସେ ଚିର ଅପରିଚିତା ।।

□ □ □

୧୦

ପ୍ରେମ ନୁହେଁ ସେତ ଅଳକର ଫୁଲ
ଭସାଇଦେଲେ ଯା' ଅରେ
ଉଜାଣି ସୁଅରେ ଭାସିଆସି ପୁଣି
କ୍ଷଣକେ ଲାଗିବ କୂଳେ ।

ପ୍ରେମ ଯେ କ୍ଷଣକ ଥରେ ଦେଲେ ଯାହା
ଫେରେ ନାହିଁ କେବେହେଲେ ।
ଯେ ହୁଏ ତାହାର ନ ଥାଉ ବା ମନେ
ସିଏ ପାଏ ଭୋଳ ଧରେ ।
ପ୍ରେମ ଚାହେଁ ବଢ଼ି ଚାଲିବାକୁ ଦୂରେ
ରେଶମୀ ପବନେ ଚଳୋର୍ମି ମାଳେ,
ଯେତେ ବଢ଼େ ସେତେ ହୁଅଇ ପ୍ରଖର,
ସେତେ ଚାଲେ ଅକୂଳରେ ॥

୧୧

ଯଦି ଭଲ ପାଅ
କଂପା ଦୂରେ ରହ
କହିବାକୁ ଲଜ କର;
ମନର ବାରତା
ମନରେ ମିଳାଏ
ଦେହ ଯଦି ନରୁଝର ।
ଯେ କଥା କହୁଛି
ଆଖିର ଅକ୍ଷର
କଂଠ କାହିଁକି
କରେନା ସ୍ୱୀକାର
ପ୍ରେମ ନୁହେଁ ଏକ
ଧୂପକାଠି ଯା'ରେ
(ଲୁଚାଇ ରଖିବ ବନ୍ଧର ଭିତରେ)
ସେ ଯେ ପ୍ରଚଣ୍ଡ ଜଳିବାର ॥

୧୨

ପ୍ରେମ ନୁହେଁ ସେ ତ ଫୁଲବନ ଛୁଇ,
ହଏ ସେ ଦହନ ଜ୍ୱାଳା,
ସେ ଚିର ଜ୍ୱଳନ, କଂଦାଇ ମାରେ
ଜୀବନ ଜନମ ସାରା ।

ମୁଁ କହୁଛି ଜଳୁଛି      ତମେ କହୁଛ ଜ୍ୱଳ,
ତେବେ ସିନା ପ୍ରେମ ହେବ ସଫଳ,
ଦୁହିଁଙ୍କ ଜଳିବା ଦ୍ୱାରା ।
ଜଳୁଛୁ ଚଂଦ୍ର ସାଥିରେ ଆମର
ପଳାଶର ନିଆଁ ଗାଢ଼ତର ଲାଲ,
ରଂଗ ତାହାର ସେଥିରେ ପଡ଼ୁଛି ଧରା ।।

□□

୧୩

ଫୁଲ ହୋଇ ତୁମେ ଭୁଲ ତ କରନି
ଫୁଟିଲ କା' ବଗିଚାରେ,
ଯଦି ଫୁଟିଥାଂତ ଭୁଲ କରି ଥରେ
ମୋ'ର ଏହି କୁଟୀରରେ,
ଦେଖିଥାଂତ ମୁଁ କି ଭିନ୍ନ ଆଖିରେ
ତୁମକୁ ଦେଖୁଛି ତୁମ ଅଜଣାରେ,
ଯାହା ଅଛ ତୁମେ ତା'ଠୁ ବେଶୀ କରି
ତୁମରି କଳନା କରେ ।
ଯା' ହୋଇ ପାରଂତ      ପାରିଲନି ହୋଇ
ସେ ଅସମାପିକାର ଜୟ ଗାନ ଗାଇ
(ଭ୍ରମ) ଛନ୍ଦ ରଚନା କରେ ।।

□□

୧୪

ବେଦନାର ବାଲୁଚରେ
କେଉଁ ଆଷାଢ଼ର ଗୁଚ୍ଛା ହୋଇ ସିଏ
ପଡ଼େ ଆସି ବେଳେ ବେଳେ ।
ଦୂର ବନାନ୍ତର କୋମଳତା ପରି
ତାର କଳା ଆଖିତଳ,
ଜୀବନର ସବୁ ଦଂଦ୍ୱର ପଥେ
କରିଦିଏ ସମତଳ ।
ଚାହିଁନି ମୁଁ କିଛି ହେଲେ ।
ସବୁ ଚାହିଁବା ବା ପାଇବା ବାହାରେ
ସେ ତ ଜନ୍ମଗତ ହୋଇ ଜଳେ ।।

୧୫

ଜାଣେ ନା ତା' ସଂଗେ ହେବ କି ନା ଦେଖା
ହାଟ ବାହୁଡ଼ାର ବେଳେ
ସେ କି ଜାଳୁଥିବ ସଞ୍ଜ ଦୀପଟି
ଓଳଗି ଚଉରା ମୂଳେ ?

ଆସିବା ବେଳେ ତ ପ୍ରଖର ଖରାରେ
ଦେଖା ହୋଇଥିଲା ବକୁଳ ମୂଳରେ,
ଟେକି ଦେଇଥିଲା ଅଂଜୁଳାଏ ପାଣି
ମୋ' ହାତକୁ ତରତରେ,
କଳସୀଟି ନୋଇଁ ତଳେ ।

କାଲେ କେ ଦେଖିବ ଓଢ଼ଣାଟି ଟାଣି
ଘୁଲିଗଲା ଡାଳି ତା' ଆଉ ଗୃହାଣୀ,
ଲୁଚିଗଲା କାହିଁ କଅଁଫୁଲ ଫୁଟା
ବାଡ଼ ଉହାଡ଼ରେ ଖରେ ।। □ □

୧୬

କେହି ତ କାହାକୁ କରେ ନାହିଁ ପ୍ରେମ,
ପ୍ରେମ ଗୁଏଁ ହୋଇଯାଏ ।
କେହି ଜାଣେ ନାହି କାହିଁକ କିପାଁଇ
ଜଣକୁ ସେ ଭଲପାଏ ।

ପ୍ରେମ ନୁହେଁ ପ୍ରଶ୍ନ,
ପ୍ରେମ ହିଁ ଉତ୍ତର ।
ସବୁ ପଚ୍ଚରିବା
ହୁଏ ଏକ ଠାର
ଆଖିର ଆଖିର, ତାରାକୁ ତାରାର ।
ଭୂଇଁ ଯେଉଁପରି ମେଘକୁ
ଖବର ଦଏ ।। □ □

# ଆଧିଭୌତିକ ଗୀତିକା

## ୧୭

ସରିଲଣି ହାଟ ମେଲାଇ ବସିଛୁ
କଆଁ ମୁଁ ବଣିଜ ପସରା,
ଗୋଟାଇ ନେଲେଣି ବିପଣି ବଜାର
ଗଡ଼ି ତ ଗଲାଣି ଖରା ।

ଯେ ଯାର ଘରକୁ ବାହୁଡ଼ିବା ପାଇଁ
ହୋଇଲେଣି ସଜ ଦୋକାନ ଉଠାଇ
ମୁଁ କଆଁ ବସିଛୁ କାହା ବାଟ ଚାହିଁ
କିଏ ଆସି ଦେବ ଡାକରା ?'
ଅଜଣା ବଣିକ କେଉଁ ଦୂର ଦେଶୁ
ଆସି ପଚାରିବ ଓହ୍ଲାଇ ତା' ଅଶ୍ୱୁ
ଅଛୁ କି ଏ ଚିଜ ଅଛୁ କି ସେ ଚିଜ
ମିଳେନା ତ ଆଉ କେଉଁଠି,
କରିବ ପଚରା ଉଚରା ।
ମୁଁ କହିବି ଅଛୁ ଏଇଠି ।
ରଖିଛୁ ସଜାଡ଼ି ସେ ସବୁ ଦରବ,
ମୁଁ ପରା ଚିହ୍ନାରା ପାଟରା ।।

## ୧୮

ମନର ସବୁଜ ବନରେ ମଉଳେ,
ମୋ' ମନ ଗହନ ଖାଲି,
ଶୂନ୍ୟ ଉପବନୁ କି ଫୁଲ ତୋଳିବି
ଶୂନ୍ୟରେ ବାହୁ ଭୋଳି ?
ତଳକୁ ଓହ୍ଲାଇ ଦେଖେ ଖାଲି ପଦା
ଶୂନ୍ୟ ବାଟ ଘାଟ ଶୂନ୍ୟର ପରଦା,
ଶୁଭଇ ଶବଦ ଜାଣେ ନାହିଁ ଭେଦ,
ମରମରେ ହୁଏ ଘାରି ।

ଶୂନ୍ୟ ପାଲଙ୍କରେ ଟେକ ଗଜଛତା
କିଏ ଯାଏ କିଛୁ ପାଏନା ବାରତା,।
ସୂର୍ଯ୍ୟ ଚନ୍ଦ୍ର ହାସ ଆଢ଼େଣି ପଡ଼ିଛି
କିଛୁ ତ ପାରେ ନା କଳି ।
ଶୁଭେ ଖାଲି ଯାହା ଗରୁଡ଼ଙ୍କ ଡାକ
ପାହାଡ଼ ତଳରୁ ଗୁମର ଗୁମର୍‌
ଭାସି ଆସେ ଥର ଥର ।। □□

୧୯

ଝଡ଼ରେ ଭାଙ୍ଗିବ ବୃକ୍ଷ
ଭାଙ୍ଗିବ ଭାଙ୍ଗିବ
ଡାଳପତ୍ର ଛିଡ଼ି ଯାଇ
ଗଂଡି ପଡ଼ିଥିବ ।
ଯେ ବୃକ୍ଷେ ଲେଟଣି ପାଗ
ଝାଡ଼ୁଥିଲି ପର
ଫୁଟୁଥିଲି ଫୁଲ ଫଳ
ନାନା ପରକାର ।
ଝଡ଼ରେ ଭାଙ୍ଗିବ ସେଇ ବୃକ୍ଷ ।

ଉପୁଡ଼ି ପଡ଼ିବ ତରୁ
ଦୋହଲିବ ମେରୁ,
ସେ ଝଡ଼କୁ ରୋକିବାକୁ
କାହା ଔରସରୁ
ଜନ୍ମି ନାହଁ ପୁତ୍ର କେନ୍ଦ୍ରରେ ସୁଦକ୍ଷ ।
ଝଡ଼ରେ ଭାଙ୍ଗିବ ସେଇ ବୃକ୍ଷ ।। □□

୨୦

ପଥେ ପଥେ ତାର ନୂପୁର ବାଜେ
ବନେ ବନେ ଆଜ ବୀଣା ଉଠେ ବାଜି
ମରେ ମୁଁ ସଜନୀ ଅଧୀର ଲାଜେ ।

ଗଂଧ ଅଂଚଳ ଉଡ଼ାଇ ସମୀର
ଶ୍ୟାମଳ ଧାନ କ୍ଷେତେ କରେ ଚଂଚଳ ।

ମନେ ମନେ ମୋର ସପନର ଢେଉ
କ୍ଷଣେ ଜାଗି ପୁଣି କ୍ଷଣକେ ଭାଜେ ॥ * □ □ □



* ଏ ଗୀତକବିତାଟି ସବୁଜ ସାହିତ୍ୟର ମୁଖପତ୍ର 'ଯୁଗବୀଣା' ପତ୍ରିକାରେ ୧୯୩୨ ସାଲରେ ପ୍ରକାଶ ପାଇଥିଲା । ସେତେବେଳକୁ ମୋର ବୟସ ୧୬।୧୭ ବର୍ଷ ଥିଲା । ଏଥିରୁ କେତେ ପଦ ମାତ୍ର ମନେଅଛି । ସ୍ୱର୍ଗତ ଭଗବତୀଚରଣ ପାଣିଗ୍ରାହୀ ଏହାକୁ ଅନେକ ସମୟରେ ଆବୃତ୍ତି କରୁଥିଲେ । ତାହା ଆଜକୁ ପ୍ରାୟ ୫୩ ବର୍ଷର କଥା । ସବୁ କାଳ୍ପନିକ ଲାଗୁଛି ! ଲେଖକ ।

୨୧

ସପତଫେଣୀ ! ସପତଫେଣୀ ।
ଜୀବନଟା ଖାଲି ସପ୍ତଫଣୀର ଜ୍ୱାଳା
ଫୁଲ ଯେତେ ନାହିଁ କଂଟା ଅଛି ସେତେ
ଏ ଯେ କଂଟକ ମାଳା
କିଛି ତ ପାଏନା ସରଣୀ ବା ରାହା
ଧୂସର ବାଲିରେ ଖାଲି ପଥ ଗୁହାଁ
ବହୁ ଅଦୃଶ୍ୟ ବଂଧନ ସତେ
ଗଢ଼ିଅଛି ବହୁ କାରା ।

ଯେତେ ଖୋଜେ ସେତେ ବଢ଼ଇ ଭ୍ରାଂତ,
ସେତେ ଅନୁଭବେ ହୃତାଶ କ୍ଳାଂତ ।
ମାନିନେବା ଭଲ ଯା ଅଛି ଯେପରି
ବରଂ ଜୀବନ ସାରା ।
ମୁଁ କି ଭୁଲିପାରେ ଝାଂଜିର ଡାକ
ଶିକୁଳି କଟାଇ ବେଳା ।।

୨୨

ଫୁଲ ଶଯ୍ୟାରେ କିଆଁ କହୁଥିଲ
ଆଁକିବାକୁ ବାଘ ଛବି ?
ଆଂକିଥିଲ ଯାହା ଖଡ଼ି ଗୋଟାଳରେ
ଉଠେ ତା' ଜୀବନ ଲଭି ।

ମୁଁ ଜାଣେ ମୁଁ ମୋ'ର କଳାର ଆହାର
ମୁଁ ତାର ପ୍ରଥମ ଗ୍ରାହ,
ତଥାପି ମୁଁ ଶିଳ୍ପୀ, ତୁମେହିଁ ତ ମୋର
ଚିର ପ୍ରେରଣାର ଉତ୍ସ ।

ଜୀବନ ମରଣ ନଶ୍ୱରର ଖେଳା
ମୁଁ ତ ମରଣର ଦାସ,
ମୋତେ ଗ୍ରଣ୍ଡ଼ ମୋର କଳା କଂଟରହେ
ନ ଥାଏଁ ମୁଁ ପଛେ କବି ।
ଜଳି ଜଳି ଆସେ ବାସର ପ୍ରଦୀପ
ଚଂଦ୍ର ଯାଉଛି ଡୁବି ॥

୨୩

ସଜଡ଼ା ଇଚ୍ଛାର ଦେଉଳରେ ଯେବେ
ପ୍ରଦୀପ ଉଠିଲା ଜଳି
ଦେଖାଗଲା ଯେତେ ଅସଜଡ଼ା ଇଚ୍ଛା
ଅମଡ଼ା ବାଟର ଗଳି
ଫୁଟିଛଂତି ହୋଇ ଭୁଲର ଫୁଲ
ଦେବତା ମଥାରେ, ଗଢ଼ି ନୂଆ ମୂଲ
ପୁରୁଣାକୁ ପଛ କରି ।

ଡେଣା ଲଭି କେତେ ଚିନ୍ତା ପ୍ରଜାପତି,
ନୃତ୍ୟ କରଂତି, କେତେ ନଟନଟୀ
ମଂଦିର ଦେହେ ଶିଳ୍ପ ହୋଇ ସେ—
ଜୀବନକୁ ବଳି ବଳି ।
ତା' ଦେଖି ଭୁଲିଛି ପୁରୁଣା ମଂତ୍ର
ସଜଡ଼ା କଥାର ଯେତେକ ଛନ୍ଦ
ମଂଦିରର ମୁଁ ମାଳୀ ।
ଦେବତାଂକ ମୁହେଁ ହସର ମୁଦ୍ରା
ପ୍ରସନ୍ନେ ଉଠେ ଝଲି ॥

୨୪

କହ ମୋତେ ଦେବ କିଏ ସେ ସାଉଁଟି
ଶାମୁକା ସାଗର କୂଳେ,
ମୁଁ ଆଉ ପାରୁନି ଗୋଟାଇ, ଚାହୁଁଛି
ଦେବାକୁ ସବୁ ତ ବାଂଟି,
ପାଇଛି ଯା' ଜୀବନରେ ।

ମୁଁ ଗୃହେଁ ଉଡେଇଁ ଦେଇ ଏଇ ମଂଚ
ଦ୍ଵଅଂଶ ଲଭାଇ ହେଟେ ସବୁ ଗ୍ରାଂଚ;
ଶୂନ୍ୟ ଗହନେ ମୁକ୍ତ ଚଢ଼େଇ,
ହୋଇ ମୁଁ ବୁଲଂତ ଆରେ
ଆକାଶର ନୀଳମାରେ ॥ □ □

୨୫

କିଏ ଜାଣିଥିଲା ଏ ପଥରେ ଅଛି
ବୋଲି ଏତେ ବାଧା, କଷଣ,
ଶ୍ୟାମ ବାଣବାହୁ ସାଥିରେ ରହିଛି
ବଇଶାଖ ଝଡ଼ ଶୋଷଣ !

ମୁଁ ଯେବେ କରିଲି ଯାତ୍ରା ଅନୁକୂଳ
ସଖାଳୁଆ ଖରା ଛୁଇଁ ନଦୀଜଳ
ଆଂବ ବଉଳର ଧୂଳି ମାଖି ଦେହେ
ଦିଶୁଥିଲା ନୀଳ ଚକ୍‌କଣ ।

ମୁଁ ତ ଜାଣିନି କଳାର ସରଣୀ
ଲୁଚାଇ ରଖିଛି ଏତେ ନାଗଫଣୀ,
ଛପି ଛପି ଯହିଁ ସାପ ଓ ଦାପୁଣୀ
ବାଟୋଇଙ୍କ କରେ ଦଂଶନ ॥ □ □

୨୬

ରଖ ତମ ଗୁଣି ଗାରୁଡ଼ି
ମୋତେ ଲାଗିନାହିଁ ଭୂତ ଅବା ପ୍ରେତ,
ଧାରେନା ମୁଁ କା'ର କଉଡ଼ି ।
ସ୍ୱେଚ୍ଛାରେ ବଶ ନେଇଛି ଏ ପଥ,
ଜାଣେ ଅଛି ବହୁ ଖାଲ ଢିପ ଗାଡ଼,

ବର ମୁଁ ନେଇଛୁ ଜାଣି ସବୁ ସ୍ମୃତି,
ଷଡର ମୁକୁଟ ସ୍ୱେଚ୍ଛାରେ ନାଇଛୁ,
ସବୁ ଜୟ ଆଉ ପରାଜୟ ମୋ'ର
ଲଭିଯାଏ ଯଥା କୁହୁଡ଼ି ॥ □□

୨୭

କିଛି ତ ପଡ଼େନା ମନେ
କି ହୋଇଲି କହ,
ସବୁ ତ ଯାଇଛୁ ଭୁଲି
ସ୍ଥାନ ଓ ସମୟ ।
ଭୁଲିଛୁ ତା' ନାମଧାମ
ଭୁଲିଛୁ ତା' ମୁହଁ ।
କେଉଁ ବ୍ରହ୍ମଶାପ ମୋତେ
କରୁଛି ଅଥୟ ।

ଧୂସର ମୋ' ସ୍ମୃତିପଟ
ଶୀତର ସାୟାହ୍ନ,
ନାହିଁ କିଛି ରେଖା ବର୍ଣ୍ଣ;
ମଳିନ ବିବର୍ଣ୍ଣ,
କିପରି ପାଇବି କହ ତାର ପରିଚୟ ।

ସବୁ ତ ଯାଇଛୁ ଭୁଲି ପୂର୍ବଜନ୍ମ ପ୍ରାୟ ।
କେଉଁ ମାଛ ମୋ' ସ୍ମୃତିକି
ଦେଇଛୁ ବା ଗିଳି ?

ଜାଣିବି କିପରି
କହ କହ ॥ □□

୨୮

ସ୍ମୃତି ମୋର ଭସେ
ବଟଫଳ ପ୍ରାୟେ
ପ୍ରଳୟ ପୟୋଧି ଜଳେ

ସ୍ମୃତିରେ ବିସ୍ମୃତି
ସ୍ଥିତିରେ ଅସ୍ଥିତି
ନୂଆ ସର୍ଜନା କରେ !

ସ୍ମୃତି ମୋ'ର ପୁଣି ଧୀରେ ଧୀରେ
ଆସେ ଫେରି
ପୂର୍ବ ଗଗନେ ଅରୁଣବର୍ଣ୍ଣା
ମଂଗଳ ଉଷା ପରି ।

ସ୍ମୃତି ମୋ'ର ଆସେ
ହଂସ ପରି ଖେଳିଖେଳି
ଦୂରତମ ଆକାଶରେ ।। ☐☐

୨୯

ଅବୁଝା ମନର କାହାଣୀ
ଶୁଣି ବା ଶୁଣାଇ କି ଲଭ କହ
ଯଦି ତା ଅକୁହା ଗୃହାଣୀ
କହି ନ ପାରିଲି ନୀରବ ଭଷାରେ,
ଖୋଲି ନ ପାରିଲି ଗୋପନ ଆଶାରେ,
ବୁଝି ନ ପାରିଲି ତା' ବାଣୀ ।।

କି ହେବ ଗାଇ ତା ସପତ ସ୍ୱରରେ
କୋମଳ ଗାଂଧାରରେ,
ଧୈବତ ସ୍ୱରେ
କହ କହ ସଖି ମଧ୍ୟରେ ?
ଖୋଲି କି ପାରିବ
ତାହା ମରମର ଚାଂକୁଣି !! ☐☐

୩୦

ଜୀବନେ ଯାହାକୁ ଦେଖି ନାହିଁ କେବେ
ତାହା ପାଇଁ କିଆଁ ଝୁରେ ।।

ଆଖି ଦେଖା ଆଉ ଅଦେଖା ଭିତରେ
ତଫାତ୍ କି ନାହିଁ ଆରେ ?
କିଏ କେଉଁଠାରେ ଥାଉ ବା ନ ଥାଉ
ଦେଖା ହେଉ ଅବା ଦେଖା ନାହିଁ ହେଉ,
ସବୁ କିଛି ଥାଇପାରେ ।

ସବୁ କିଛି ଅଛି ସ୍ଥିତିର ବିନ୍ଦୁରେ
ସେ ବିନ୍ଦୁ ଗୁଡ଼ାକୁ କାଢ଼ି ନେଇଗଲେ
ସିଏ ନାହିଁ ସେଇଠାରେ ।
କେବଳ ସେ ସମୟରେ ॥ □□

୩୧

ଜୀବନର ଯେତେ କ୍ଷତ, ଅପମାନ
ଯେତେ ଗଉରବ ଯଶ,
ମନେହୁଏ ସବୁ ଧୂଳିଖେଳ ଯାହା
ଦିନଶେଷେ ହୁଏ ଶେଷ ।

ଧୋଇନିଏ ଢେଉ ମୋର ବାଲିଘର,
ଉଡ଼ାଇ ନିଏ ତା ବତାସ ପ୍ରଖର;
ଯାହା ବଞ୍ଚି ରହେ ତାହା ଜୀବନର
କେବଳ ସାରାଂଶ ।

ପଞ୍ଚଭୂତେ ତା ହୁଏ ନାହିଁ ଲୀନ,
ସ୍ମୃତି ରଖେ ତାକୁ କରି ଚିରନ୍ତନ ।
ମହାକାଳ ତାକୁ କରେ ମହାସ୍ନାନ,
ଜୀବନର ସେ ନିର୍ଯାସ ॥ □□

୩୨

ଏତେ ବାଜା ଏତେ ରୋଷଣି
କେଉଁଠୁ ଆସେ ଏ ସହରଟାରେ ?

ସୁଚଲା ମୁହଁର ଶୁଖିଲା ହୃଦରେ
                ମେହେର୍ବ ଗଡ଼ ସୁଲେ ॥
ଚନାବାଦାମ ସୁପା ପରି
                ରାସ୍ତାରେ ସନ୍ଧି ଜୀବନ
                                ପଡ଼ି ମରେ,
'ମାଢ଼ଖିଆ ଖୁସି ଗୁଡାକ'
                ବସ୍ତି ଘୂରି ବୁଲେ ।
ନର୍ଦମା ସବୁ ଭରପୂର,
                ପାଣି ନାହିଁ ଆନିକଟରେ
ଏତେ ପ୍ରକାର ହସ
                ଏତେ ଧ୍ୱନି
                        କାହୁଁ ଆସେ ଏ ସହରଟାରେ ?
                        ଏଇ ଡାକୁବ୍ ସହରଟାରେ ॥ □ □

**ଣାଣା**

ଦର୍ପଣେ ଯା'ର ଛାଇ ପଡ଼େ ଆସି
                ସେ ନୁହେଁ ମୋ'ର ବିଶ୍ୱ
ମୋ' ଜଗତ୍ ଏକ ଭଂଗା କାଚ ଗ୍ଲାସ୍
        (ଏକ) ଭ୍ରାଂତ, ରୁଗ୍ଣ ଅଶ୍ୱ ।
ଫଟା ଲଣ୍ଠଣ ଧୂଆଁ ଆଲୁଅରେ
ଫୁଟା ଛାତ ତଳେ ଓଦା ମାଟି ଘରେ
ଖେଟ କାଗଜ ବିଛାଇ ଶୋଇଛନ୍ତି
                ସନ୍ଧି ଦଂପତି ନିସ୍ୱ ।
ଆଉ ଅଛି ଏକ ମଲଂଗ ଦଳ
ସୁଲକ୍ଷ, ଚତୁର ବେଶ୍ ହୁସିଆର ।
ସତ୍ୟପାଠ କରି ସବୁ ମାମଲାରୁ
                ଖସି ବନେ ବାବା ଶିଷ୍ୟ ।
ସଫା ପୋଷାକରେ ହାଂକି ନୂଆ କାର୍
ସବୁ ରାଜଧାନୀ କରେ ସେ ସଫର ।
ସିଏ ଅଛି ଏଠି ସେଠି ଓ ସବୁଠି
                ନାହିଁ କିଛି ନିଜସ୍ୱ ।

ମୋ' ଜଗତ ଏକ ଜୁଆ ଘରର ଆଡ଼ା,
ପଣାପାଲି ପରି ନାନା ଛକେ ଛୁଡ଼ା,
ସବୁ ମୂଲ୍ୟ ତ ଭୂଷୁଡ଼ି ପଡ଼ୁଛି
ଯେଉଁପରି ପୋଡ଼ା ଶସ୍ୟ ।। □□

୩୪

ଧରମ କରମ ପଛେ ପଡ଼ିଥାଉ
ମରଣରେ ରହୁ ଦୂରେ,
ଜଣେ ବି ମଣିଷ ଭେଟିକେ ଥିଲି ଯାଏଁ
ବିଶ୍ରାମ ନାହିଁ ମୋରେ ।
ମଣିଷ କରୁଛି ମଣିଷ ଶିକାର
ନିଜେ ହତଭାଗା ପାଏ ନା ନିସ୍ତାର,
ଶେଷେ ନିଜେ ପଡ଼େ ନିଜ ପାଖେ ବଳି
ମଣିଷର ପାରିଧିରେ ।।

ହୋଇଲାଣି ଶେଷ ଅମୃତ ମଣୋହ୍ମ,
ଘୁଳିଛି କେବଳ ବିଷ ଖୁଆଖୋଇ,
ହସେ ଭରି ବିଷ ଲୁହରେ ବି ବିଷ,
ହଳାହଳ ଚୁଂବନରେ ।
ପ୍ରେମରେ ଗରଳ ବିଶ୍ୱାସରେ ବିଷ
ବିଷକନ୍ୟାର ଘନ ଆଶ୍ଳେଷ
ଭିଡ଼ିଛୁଟ ପ୍ରୀତି ଗଳେ ।
ସେଠି ଉଚ୍ଚାରିବି କି ଅମୃତ ବାଣୀ,
ଜୀବନ ଯେଉଁଠି ବିଷର ଗୁଞ୍ଜଣି,
ପାରିବି କିପରି ଦୂର କରି ଜ୍ୱାଳା
ମୋ'ର ଏ କଲମ ଗାରେ !! □□

୩୫

(କେଉଁ) ଧୂସର ଇଂଜିନ୍ ପଛରେ ହୋଇ ବାଂଧା
ଜୀବନ ଛୁଟିଛି ଦିନରାତି ଅବିରତ,
ସେଇ ଛୁଟିବାରେ ଅଛି ନା କିଛି ଅର୍ଥ
ନିଜକୁ ପଚାରେନା ତ ।

କାହୁଁ ସେ ପାଇବ ଶାଂଘର ଅଲକାନଂଦା
କାହୁଁ ବା ପାଇବ ପଥ ?
ସବୁଠି ଦେଖେ ମୁଁ ପଡ଼ିଛୁ ଶାଗୁଣା ଖୁଇ
ଯଦାଚ ମଣିଷ ଅଧେ ଅଛୁ ଏବେ ଜୀଇ
ବାକୀ ଅଧକ ତା କା' ପାଖେ ପଡ଼ିଛୁ ବଂଧା ।
ମଣିଷ ଯେ ନିଜେ ନିଜଠି ଅପରଚିତ ॥ ☐☐

୩୬

ବାଟ ଯାକ ଦେଖେ ବାଂକ
କାହିଁ ନାହିଁ ସିଧା ସଳଖ ଗ୍ଭଲିବା
ଯେପରି ନଦୀର ଶଂଖ ।
ଖାଲି ମୋଡ଼ଫେରି,
ପାଖ କଟାଇବା,
ଅନ୍ୟକୁ ଠକି
ନିଜକୁ ଠକିବା ।
ଜୀବନଟା ସାରି ଯେପରି ଗୋଟାଏ
ଜଟିଳ ମାନସାଂକ ।
ଗ୍ଭଲି ଗ୍ଭଲି ଦେଖେ
ଯେଉଁଠି ସେଇଠି,
କେଉଁଠି ଯାଇନି
କିଛି ତ ହୋଇନି ॥
କାଟିଛି ଯଦାଚ ବହୁ ସଡ଼କର
ମୁଁ ବହୁ ମାଇଲ ଅଂକ ॥ ☐☐

୩୭

ଜୋତା ସବୁ ସିନା ମଚମଚ କରେ
ପାଦ ମୋ ରହିଛୁ ଛଡ଼ା,
କାହିଁ ମୁଁ ଯାଇନି,
ଯେଉଁଠାରେ ଥିଲି କେବଳ ସେଇଠା ଛଡ଼ା ।
ସବୁ ଦିନ ଘଡ଼ି ମିନିଟ୍ ପ୍ରହର

ମନେହୁଏ ଏକ ବେଖାପ ସ୍ୱର,
ସବୁଠା ମିଶାଇ ଏକ ବିଡ଼ଂବନା
ଶ୍ୱବୋଧାଶ୍ରୟର ଚୂଡ଼ା ।
ଜୀବନଟା କ'ଣ କେବଳ ବଂଚିବା ?
ଶୂନ୍ୟସ୍ମରଣ, କାହିଁ ନ ପହଂଚିବା ?
ଘଦ୍ଦଚ-ସନ୍ତୁଷ୍ଟ ପ୍ରତିଟି ପଲକ
ଦାରୁଣ ଜୀବନ ପୀଡ଼ା ।।

୩୮

ଏଠି ନାହିଁ ଅଛୁ ସେଠି ସେ କେଉଁଠି,
ସେଠି ନାହିଁ ଅଛୁ ଏଠି,
କେଉଁଠି ପାଇବ ସ୍ୱଜାଲ ରତନ
କାହିଁ ନାହିଁ, ସେ ସବୁଠି ।
ଯେତେ ଖୋଜ ସେତେ ଲାଗେ ସେ ସୁଦୂର,
ସ୍ୱର୍ଗେ ଲାଗେ ଡାଲ       ମଂଚେ ଲାଗେ ଡ଼ାଳ,
କିପରି କରିବ ଖଂଡ ଖଂଡ ତାକୁ
କିପରି ବା ନେବ ବାଂଟି !
ସବୁକୁ ମିଶାଇ ସେ ରହେ ସେପରି
ସବୁବେଳେ ଏକଗୋଟି ।।

**୩୯**

କଳା ପରବତେ ନୀଳା ଲଗାଇଛ
ଆହେ ନୀଳାଚଳ ସାଆଂତ,
ମଣିମା ମଣିମା ଡାକ ପଡ଼ୁଅଛୁ
ପହଡ଼ ପଡ଼ବା ଯାଏ ତ ।

ଚକା ଆଖିରେ ତ ପଲକ ନ ପଡ଼େ
ତ୍ରିପୁର ବାରତା ସବୁ ଜଣାପଡ଼େ ।

ସବୁ ଜାଣି କିଛୁ ନ ଜାଣିଲା ପରି
କିଆଁ ବଲବଲ ଚାହିଁତ !

ବହୁ ମତ ବହୁ ପଥର ଦଉଡ଼,
ପାରୁଛୁ ଧରଣୀ ରକତରେ ବୁଡ଼ ।

କାହିଁ ଗଲା ତମ ସାମ୍ୟ ମଇତ୍ରୀ
ଶାଂଢର ବାନା କୁହତ ।

ଭକତବଂଧୁରେ ଯଦି ତୁମେ ଗଣା
କିଆଁ ଦୁଃଖୀ ଜନେ କର ବାଣ୍ଟବଣା ।
ସବୁ ବାଟ ଯଦି ଅଠର ନଳାଠି
ଏକାଠି ମିଶାଇ ଦିଅଂ ତ !!

**୪୦**

ଚକା ନୟନ ଥକା ମାର କିପାଇଁ ?
ଲଂଚ ମିଛେ କଳଗୋଳେ
ଦୀନ ଦୁର୍ବଳ ବିକଳେ
ଥରିଲ ଭୁଇଁ ।
ପୃଥ୍ୱୀ ଡାକେ ଧାନ୍ଧ ଧାନ୍ଧ

ଖଳ ଦୁର୍ଜନେ ଧସାଇ
ସାଧୁ, ଗୁଣୀ, ଦୀନ ଜନେ
ରଖ ରଖ,
କଲା ଗୋସାଇଁ ।

ଚକ୍ର ପେଶି ନକ୍ର ନାଶି
ଶୋଷଣ କଳ ବିନାଶି
ଦୁଃଖୀ ଦୁର୍ବଳେ ରଖ
ଜଗତ ସାଇଁ ।। □□

୪୧

ଜଗତ ଜନଙ୍କୁ ହିତ
ଶୁଣ ହେ ଜଗତନାଥ
ନୀଳ ଶଇଳେ ବସି
ଅଚଳ ମହାମେରୁ ପାଲଟି ଗଲ କହେ
(ହେ ଦେବତା !)

ଥିଲ ତ ଦାରୁଭୂତ
ହେଲ ତଟସ୍ଥ ସ୍ଥିତ (ହେ ଦେବତା !)
ଦେଖିଲ ନାହିଁ କାଲୁଷ
କପଟ ଏ ଦୁନିଆ !

ଦୀନ ଦଳିତ ଜନ
ଆଜି ହେଲେଣି ଶ୍ୱାନ
ଖୁଦ କଣିକା ପାଇଁ
ଏଇ ବଡ଼ ଦାଂଡେ
କରଂତ କଳିକଜିଆ (ହେ ଦେବତା !)

ଦେଖି କି ଦେଖୁ ନାହଁ
ଦେଖି କି ପାଂଚ କୁହ ।

ତୁମେ କି ଚୂଡ଼ାନ୍ତ
ଅସାମ୍ୟ, ଛଳ, କୋହ
ଆହେ ଛପନ ଭୋଗଖିଆ !
(ହେ ଦେବତା !) ☐ ☐

୪୬

କହ କହ କଳା ଠାକୁର
ଅତୀତର କଥା କହ ।
କେଉଁଠାରେ ଥିଲ    କେଉଁଠୁ ଅଇଲ
ଶରଧା ବାଲିରେ କରିଲ ଘର ।

ଜଣେ ଥିଲ ପୁଣି    ତିନିଜଣ ହେଲ
ଏଇ ଭଉଣୀଙ୍କୁ କାହୁଁ ପାଇଲ ?
ଦାରୁ ହୋଇ ଯେବେ    ସିଂଧୁରେ ଭାସିଲ
ଠାବ କଲା ପୁଣି କାହୁଁ ଶବର ?
ସେ'ଠୁ ଆସି ପୁଣି କିସ କରିଲ !

ଯବନ ଭୟରେ    ମହାକାଂତାରରେ
ଯାଇ ଲୁଚିଲ ।
ଗାଲ ମାଧବର    ଘୋଡ଼ା ଟାପୁ ବାଜି
ଉଦ୍ଧାର ହେଲ ।

ଘରେ ଅଇଲ, କିସ କରିଲ ?
କହ ମୋର କଳା ଦେବତା !
ମୃତ ଅତୀତର    ସକଳ ବାରତା
ତୁମ ମୁହେଁ ଲିଭୁ କଥା ।

ତୁମେ ମୋ' ଜାତିର    ମୂକ ଇତିହାସ
ହେ କଳା ଦେବତା ଜୁହ ॥    ☐ ☐

## ୪୩

ଏଡ଼େ ବଡ଼ ଆଖି                    ଏଡ଼େ ବଡ଼ ଘଟ

ଏଡ଼େ ବଡ଼ ଯା'ର ପଟ

(ମା'ଲୋ) କପଣ ପାଇବ ତା'ର ଥଳକୂଳ ଭେଟ ?

ଗୁହେଁ ମୁଁ ଅବାକ୍ ହୋଇ

କେବେ କଳାହାଣ୍ଡି ହୋଇ

ନୀଳ ପାହାଡ଼ରେ ଯେବେ ସିଏ ଝୁଲୁଥାଇ,

କେବେ ସେ ଛୁଏଁନା

ଟୋପାଏ ଅଧରପଣା,

ଅଣସର ଘରେ

ଜରରେ ଯେ ଥାଏ ଶୋଇ ।

କେବେ ପୁଣି କଳାଘୋଡ଼ାରେ ଚଢ଼ି ସେ

କାଂଚପୁରେ ଯାଏ କାହିଁ

କରିବାକୁ କ ଲଢ଼େଇ !

(ମା'ଲୋ) ହାତ ଗୋଡ଼ ଯା'ର ନାହିଁ ! !         □ □

## ୪୪

କଳା ଆଖି କୁହୁକ କରେ

ନକଟକୁ ଗୁଡ଼ ଟାଣଇ ଦୂରେ ।

କେତେ ତପୀ, ତାପୀ ହୃତ୍‌ପୀଂକ ଅଣାଇ

ଟଣାଏ ତା'ରଥ ଦଉଡ଼ା ଭଳେ ।

ହିମାଦ୍ରି ଶିଖରୁ କେତେ ଯୋଗୀ ମୁନ

କନ୍ୟାକୁମାରୀରୁ ଗୃହସ୍ଥ, ଗୃହିଣୀ

ଗୃହ ଭଟ ନଟ ଖଂଟ ଓ ବେପାରୀ,

ସଂଥ ସାଧୁଜନେ ଟାଣଇ ଜାଲେ ।

ବ୍ରାହ୍ମଣ, ଚଂଡାଳ, ଖ୍ରୀଷ୍ଟାନ, ଯବନ

ସବୁରିକ ଆଣି କରଇ ସ୍ଥାପନ

ନିଜ ଛନ୍ଦତଳେ, କ କମିଆ ବଳେ ।

ସାରା ଦେଶଟାକୁ ପାଗଳ କରେ ॥         □ □

୪୫

ନଂନ୍ଦିଘୋଷ ରଥେ କୁଆଡ଼େ ଯାଉଛ
ହେ ରାଜନ !
ସଙ୍ଗେ ଘେନି ଏତେ ଲୋକ, ପରିଜନ,
କାହିଁକି ବାଇଦ ଝମକ କାହାଳୀ
ଘୋଷଯାତ୍ରା କି କାରଣ ? (ହେ ଦେବ !)
ମୁଁ ଆସିଛି ଜଣେ ମଥୁରା କଂସକୁ
କରିବାକୁ ଦରଶନ । (ହେ ଦେବ !)

ଶୁଣରେ ମଥୁରା ନଗ୍ରବାସୀ ତୁ ଶୁଣ, ଶୁଣ ।
ମୁଁ ସେହି ଅପୋଡ଼ା ପିଂଡ,
କ୍ଷୀରୋଦ୍ରେ ଲଗିଲି ଆସି ଜାଣ ।
କରୁଛୁ ଗୁଂଡିଚ୍ଚ ବିଜେ
ଫେରିବୁ ତ ଦଶ ଦିନ ।
ଶୁଭେ ବାହୁଡ଼ି ଘରକୁ ଯିବୁ,
ସର୍ବ ମଥୁରାବାସୀଂକୁ ଆଂଭର
ଶୁଭମନାସ ଜଣାଇ ଦେବୁ ।
(ରେ ବାଟୋଇ !) □ □

୪୬

କଳା ଭାଲୁ ତୁମେ କେଡ଼େ ସୁଂଦର !
ନିତ ଉଦେ ହୋଇ ଫୁଟାଅ ସହସ୍ର
ହୃଦ-କମଳ ।
ହୁଅ କେତେ ବେଶ ସକାଳରୁ ସଂଜ
ମାଦଳ ଦିହରେ କେତେ ଭୂଷା ଖଂଜ,
ତୁଳସୀର ମାଳ, ସେବତୀ, ଦଅଣା,
ବାହୁଟୀ, ବଉଣି ପୁଣି ଗୁଂଜର ।
ଦ୍ୱାପରେ ଯେ ବେଶେ ଗୋପୀଂକ ମୋହିଲ
ସତୀଂକ ବରତ କରିଲ ଚୂନା,
ସେ ବେଶ କା’ ପାଇଁ ଆଜି ହୁଅ ତୁମେ
କହ କହ ଆହେ କାଳିଆ ସୁନା ।
କଳା ଭାଲୁ ଦିଶ କେଡ଼େ ସୁଂଦର ।। □ □

୪୭

କହିବାକୁ ଲାଜ     ବ୍ରଜ ଯୁବରାଜ
    କଥା ବଡ଼ ଗୁରୁତର ।
ତୁମ ବେଶକାରୀ     ସଜାଇବା ବେଳେ
    ଶ୍ରୀଅଂଗ ଆଜି ତୁମର
ଦେଖିଲି ଲାଗିଛୁ     ବନମାଳେ ତୁମ
    ଗୋପୀ କୁଂତଳ ଦାମ
ଗୁପତେ କହିଲି     ସୁବଳ ସଖାଂକୁ
    ସେ ଦେଇ ରାଣ ନିୟମ,
କାନରୁ କାନ     ନ କରିବା ପାଇଁ,
    ସୁବଳ ମଧୁମଂଗଳ
ନିୟମ କରାଇ     କହିଲେ ନିଠାଇ,
    କଥା ଏବେ ଲୁଚି ନାହିଁ ।
ସାରା ଗୋପପୁର     ବାଇଦ ବାଜୁଛି ଘୋର ।।

ହସି ବନମାଳୀ     କହିଲେ ଏ କାଳି
    ଚଂଦନ ହେଉ ମୋ'ର ।
ଚଂଦ୍ରକୁ ସିନା କଳଂକ ଦିଶେ ସୁନ୍ଦର ।।

୪୮

ତୁଳା ମାସରେ ମୁଁ ଶୁଣିଥିଲି ସବଧାନ,
ମକର ମାସରେ ହେଲି ବହନ ।
ସେଇ ବାଟ ଧରି ଅତି ଗୋପନ
        ଯିବି ମୁଁ ଗହନ ବନ ।
ଦର୍ଶନ କରିବି ନୀଳମାଧବ
ଯାମନିକ ବନେ ଶବର ଯେ ଦେବ
        ପୂଜୁଛି କରି ଯତନ,
ନୀଳସୁଂଦର ପର୍ବତେ ଥାପିବୁ
ଯୁଗ ଯୁଗ ଧରି ତାଂକୁ ପୂଜିବୁଁ ।
ଆର୍ଯ୍ୟ ଓ ଅନାର୍ଯ୍ୟ ଏ ଦୁଇ ଧାରାର
        ହୋଇବ ଶୁଭ ମିଳନ ।।

□ □

କବିତା-୧୯୮୫

## ୪୯

ବଡ଼ ବଡ଼ ଆଖି   ଦେଖେ ଖୁବ୍ କମ୍ ,
ରତ୍ନ ସିଂହାସନେ ବସି ହୋଇ ଗୁମ୍ ।
ଚହ୍ଲ ଖାଲି ନିଜ ପେଟକୁ ।
ଛପନପଉଟୀ   ଭୋଗ ଖାଇଦେଇ
( ଅରେ ) ହାକୁଟି ନ ମାର ବାଟକୁ ।
ମାଣିକଠୁ ଦହି   ପେଟେ ଖାଇଦେଇ
ପଳାଉଥିଲ ତ ପଇସା ନ ଦେଇ ।

ମାଗିବାରୁ ଦେଲ ଖୋଲି ରତ୍ନମୁଦି
ତାକୁ ପୁଣି କେତେ ଛଟକୁ ।
କେତେ କହୁ ହେବ ଏ ଧର୍ମ ସଂସାର,
ଜୀବନ-ଯାତ୍ରା ହେଲାଣି ଅଚଳ ।
କୋଠଭୋଗ ଖାଇ   ରନ୍ଧ ଖାଲି ସ୍ୱହଁ
ଦେଖନା ଜୀବନ ହାଟକୁ ।।   □□□



# ବ୍ୟଂଗ ଗୀତିକା

୫୦

ତୁମେ ଯେବେ ଗୁଣ ପକା
ଭଲ ଲଗେ ମୋତେ    ସବୁଠାରୁ ସଚ୍ଚେ
ବିଦ୍ୟାଗୁଣଟି ଏକା !

(କାରଣ) ଆଗରେ ରହିଛି
ଓଡ଼ିଆରେ ଏମ୍. ଏ. ପରୀକ୍ଷା
ଘୋର ଦକା ॥

କୁହ ଯେବେ    'ଚନ୍ଦ୍ର ଛୁଅଁ'
ତୁମ ଭୃଜବଲ୍ଲୀଠାରୁ ପାଦ ଦୁଇ
ମନେହୁଏ ଲେଭମାସ୍କ ।
(ମାତ୍ର) ମୁଁ ତ ଜୟଦେବ କବି ନୁହଁ ।
ତେଣୁ ମନେ ଜାଗେ ଶଂକା ॥    □ □

୫୧

ପ୍ରିୟାର ନାମ ସୁଷ୍ମା ମୋ'ର
ସଖୀର ନାମ ରୂପ୍‌ସା ।

ପ୍ରିୟାଟି ଚିର ମୌନାବତୀ,
ସଖୀଟି ବଡ଼ ଝାପ୍‌ସା ।

ପ୍ରିୟା ମୋ' ଯେବେ ସାତ ଭାଇରେ
ଗୋଟିଏ ସୁନା ଚଂପା ।

ସଖୀଟି ତାର ସାତ ଭଉଣୀରେ
ସର୍ବଶେଷ ଶଂପା ।

ଉଭୟେ ଯାଂନ୍ତ ଏକଇ ସ୍ଥାନେ
ଚଢ଼ି ଏକଇ ଶକ୍‌ସା ॥

ପ୍ରିୟ ମୋ'ଯେବେ ମଧୁଛଂଦା,
ସଖୀ ଗୋଲକଧଂଦା,
ଗୋଟିଏ ଡାଳେ ଦୁଇଟି ଫୁଲ,
ଦୁହେଁ ଏକଇ ନକ୍‌ସା ॥

□□□

# ଦେଶାତ୍ମବୋଧ ଗୀତିକା

୫୨

ବରୁଣି ପାହାଡ଼ ! ବରୁଣି ପାହାଡ଼ !
କହ କହ କାର ଏ ବୁକୁ ହାଡ଼ ?
ଢାଳିଦେଲ୍ କିଏ ଛାତିର ଶୋଣିତ
ଲଭିବାକୁ କେଉଁ କୀର୍ତ୍ତି ?
କାହିଁ ପଡ଼ିଅଛି ଏଠି କଂକାଳ ?
କି କଥା କହିବ ବୋଲ !!

ବରୁଣି ପାହାଡ଼ ! ବରୁଣି ପାହାଡ଼ !
କହ କେଉଁ ଘର ଗଢ଼ିବ ମୁଁ ଗଡ଼ ?
କାହିଁଗଲା ସବୁ ସାହସର ଶିଖା
ଦୃପ୍ତ ପ୍ରାଣର ଅଗ୍ନି ପରୀକ୍ଷା ?
ଅବା ସେ ପଡ଼ିଛି ଦୁଂଦୁଭି ହାଡ଼
କେଉଁ ରାମପଦ
ଲଂଘିବ ତା' ପାହାଡ଼ !!

୫୩

କହ ଖୋରଧାର ମାଟି !
ଆଉ ଥରେ ସତେ ରକ୍ତ କରବୀ
ଏ ଦେଶେ ଉଠିବ ଫୁଟି ।
ଝକ୍‌ଝକ୍ ଲାଲ ତରୱାଲ୍ ପରି
ପାଇକର ଦେହ ଉଠିବ କି ଜଳି ?
ରକତ ଚଂଦନ ବୃକ୍ଷର ପ୍ରାନ୍ତେ
ଝଡଝଂଜାକୁ କାଟି ।।

କହ ବରୁଣେଇ
କହ ଗଡ଼ଖାଇ
କ୍ଷୁର ଧାର ପରି ତୋ' ବୁକୁ ନିଶାଣ
ରହେ କାହିଁ ମଥା ପୋତି ?
କହ ଖୋରଧାର ମାଟି ।।

●

